# ତୀର୍ଥପଥେ




ପ୍ରଭାକର ସୂପକାର


Digitized by srujanika@gmail.com

ପ୍ରକାଶକ:—
ଓଡ଼ିଶା ସାହିତ୍ୟ ଏକାଡ଼େମୀ
ଭୁବନେଶ୍ୱର-୧
୧୯୭୪

ମୁଦ୍ରାକର:—ଶ୍ରୀ ଗୋବନ୍ଦ ସାହୁ
ବାସନ୍ତ ପ୍ରିଣ୍ଟର୍ସ
ଡମରୁଆ ବଜାର, କଟକ-୧

ମୂଲ୍ୟ—ଦୁଇଟଙ୍କା ପଚିଶ ପଇସା


Digitized by srujanika@gmail.com

# ଅଗ୍ରଲେଖ

ବର୍ତ୍ତମାନ ଯୁଗରେ "ଭ୍ରମଣ ବୃତ୍ତାନ୍ତ" ମଧ୍ୟ ସୃଷ୍ଟିମୂଳକ ସାହିତ୍ୟରୂପେ ସ୍ୱୀକୃତିଲାଭ କଲାଣି । ପର୍ଯ୍ୟଟକର ଦୃଷ୍ଟିଭଙ୍ଗୀ, ଭାବ-ପ୍ରକାଶ ତଥା ଆଭିମୁଖ୍ୟ ଅନୁଯାୟୀ ବିଭିନ୍ନ ଭ୍ରମଣ ବୃତ୍ତାନ୍ତ ଭିନ୍ନ ଭିନ୍ନ ଭାବରେ ନିଜ ନିଜର ବିଶେଷତ୍ୱ ରକ୍ଷା କରିଥାଏ । ଏହି ଦୃଷ୍ଟିରୁ, ଗୋଟିଏ ନିର୍ଦ୍ଦିଷ୍ଟ ଦର୍ଶନୀୟ ସ୍ଥାନ ସମ୍ପର୍କରେ ଏକାଧିକ ସରସ ଓ ଉପାଦେୟ ପୁସ୍ତକ ରଚନା କରାଯାଇପାରେ । "ତୀର୍ଥ ପଥେ" ହିମାଳୟ ଭ୍ରମଣର ଏକ ଶୁଭ ସଙ୍କେତ ବର୍ତ୍ତନ କରି ଆତ୍ମପ୍ରକାଶ କରିଅଛି । ଶ୍ରୀଯୁକ୍ତ ଶ୍ରଦ୍ଧାକର ସୂପକାର ନିଜର ଦୃଷ୍ଟିକୋଣରୁ ନାନା ମଧୁର ଅନୁଭୂତି ଏଥିରେ ରୂପାୟିତ କରିଅଛନ୍ତି । ଆଧୁନିକ ଓଡ଼ିଆ ସାହିତ୍ୟକୁ ସବୁଦିଗରୁ ସମୃଦ୍ଧ କରିବାକୁ ହେଲେ କାବ୍ୟ, ନାଟକ ଓ କଥାସାହିତ୍ୟ ସଙ୍ଗେ ଜୀବନୀ ଓ ଭ୍ରମଣମୂଳକ ପୁସ୍ତକମାନଙ୍କର ପ୍ରଣୟନ ଓ ପ୍ରକାଶ ମଧ୍ୟ ଆବଶ୍ୟକ । ଏ ଦିଗରେ ଆମର ଲେଖକମାନେ ଏବେ ଅଧିକ ଧ୍ୟାନ ଦେଉଥିବାରୁ ମନରେ ସ୍ୱତଃ ଆନନ୍ଦ ଜାତ ହୋଇଥାଏ । ଆଶା, "ତୀର୍ଥପଥେ" ସମସ୍ତ "ତୀର୍ଥ" ଯାତ୍ରୀ ତଥା ସାଧାରଣ ପାଠକମାନଙ୍କର ମଧ୍ୟ ଆନନ୍ଦଦାୟକ ହେବ ।

**ସନ୍ତୋଷକୁମାର ସାହୁ**
ସଭାପତି
**ଓଡ଼ିଶା ସାହିତ୍ୟ ଏକାଡ଼େମୀ**

# ଦୁଇପଦ

'ତୀର୍ଥ ପଥେ' ଭ୍ରମଣ ସାହିତ୍ୟର ଅନ୍ତର୍ଗତ । ଯେଉଁ ଲେଖକମାନେ ଓଡ଼ିଆ ସାହିତ୍ୟର ପୁଷ୍ଟି ବିଧାନ ଲାଗି ଲେଖନୀ ଚାଳନା କରୁଅଛନ୍ତି, ସେମାନଙ୍କୁ ଉତ୍ସାହିତ କରିବାର ପରିକଳ୍ପନା ଅନୁସାରେ ଏହି ପୁସ୍ତକ ମୁଦ୍ରିତ ଓ ପ୍ରକାଶିତ ହୋଇଅଛି । ପ୍ରକାଶ ନିମନ୍ତେ ଏକାଡେମୀର ହସ୍ତଗତ ହୋଇଥିବା ବିବିଧ ପ୍ରକାରର ପାଣ୍ଡୁଲିପି ମଧ୍ୟରେ ଏହା ଅନ୍ୟତମ ।

ଗୌରୀକୁମାର ବ୍ରହ୍ମା
ସେକ୍ରେଟାରୀ

# ତୀର୍ଥ ପଥେ

## ହିମାଳୟର ଆକର୍ଷଣ

( ପ୍ରଥମ ପର୍ଯ୍ୟାୟ )

ମର୍ତ୍ତ୍ୟ-କୋଳାହଳ-ମୁଖର ଜୀବନରୁ ବହୁଦୂରରେ ଅଳକ ନନ୍ଦାର ତୀରବର୍ତ୍ତୀ ବଦରିକା ଆଶ୍ରମରେ ଜୀବନର ଅବଶିଷ୍ଟାଂଶ ଅତିବାହିତ କରିବାକୁ ଉଦ୍ଧବଙ୍କୁ ଭଗବାନ୍ ଶ୍ରୀକୃଷ୍ଣ ନିମ୍ନଲିଖିତ ଉପଦେଶ ଦେଇଥିଲେ:---

"ଗଚ୍ଛୋଦ୍ଧବ ମୟାଦିଷ୍ଟୋ ବଦର୍ଯ୍ୟାଖ୍ୟଂ ମମାଶ୍ରମମ୍
ତତ୍ର ମତ୍ପାଦତୀର୍ଥୋଦେ ସ୍ନାନୋପସ୍ପର୍ଶନୈଃ ଶୁଚିଃ ॥
ଈକ୍ଷୟାଳକନନ୍ଦାୟା ବିଧୂତାଶେଷ କଳ୍ମଷଃ
ବସାନୋ ବଲ୍କଲାନ୍ୟଙ୍ଗ ବନ୍ୟଭୁକ୍ ସୁଖନିଃସ୍ପୃହଃ ...ଇତ୍ୟାଦି

(ଭାଗବତ---ଏକାଦଶସ୍କନ୍ଧ)

ସେହି ଦିନଠାରୁ ଯୁଗ ଯୁଗ ଧରି ବହୁ ସାଧକ, ମନୀଷୀ ଓ ଯୋଗୀଙ୍କର ଚରଣ ରେଣୁରେ ଏହି ତୀର୍ଥ ଭୂମିର ପଥ ପବିତ୍ର ହୋଇ ଆସିଛି । ହିମାଳୟର ପାଦଦେଶରେ ଅବସ୍ଥିତ କେଦାରନାଥ ମନ୍ଦିର ଓ ତହିଁରୁ ଅଦୂରବର୍ତ୍ତୀ ବଦ୍ରୀନାଥ ମନ୍ଦିର ସହସ୍ର ସହସ୍ର ଯୋଗୀ ଋଷିଙ୍କର ଲୀଳା କ୍ଷେତ୍ର ଓ ଅଗଣିତ ଯାତ୍ରୀମାନଙ୍କର ତୀର୍ଥଭୂମି ରୂପେ ପରିଚିତ ।

ପାର୍ଲିଆମେଣ୍ଟର କେତେଜଣ ସଭ୍ୟବନ୍ଧୁ ଶରତ୍କାଳୀନ ଅଧିବେଶନ ପରେ ଏ ଦୁଇ ତୀର୍ଥକୁ ପର୍ଯ୍ୟଟନ ପାଇଁ ବାହାରୁଥିବାରୁ, ମୁଁ ମଧ୍ୟ ସେମାନଙ୍କର ସହଗାମୀ ହେବାକୁ ସ୍ଥିର କଲି । ଏହା ପୂର୍ବରୁ ହିମାଳୟର ପାଦଦେଶରେ ଅବସ୍ଥିତ ସିମଳାକୁ ମୁଁ ପ୍ରାୟ ଦୁଇବର୍ଷ ପୂର୍ବେ ଥରେ କାର୍ଯ୍ୟ ଉପଲକ୍ଷ୍ୟରେ ଯାଇଥିଲି ଓ ହିମାଳୟର ଶୋଭା ଦେଖି ମୁଗ୍ଧ

ହୋଇଥିଲି, କିନ୍ତୁ ସେତେବେଳେ ମୋତେ ବିଶେଷ ଆୟାସ ସ୍ୱୀକାର କରିବାକୁ ପଡ଼ିନଥିଲା । ରେଲଗାଡ଼ି ସିମଳା ପର୍ଯ୍ୟନ୍ତ ଯାଏ ଓ ସେଠାରେ ହିମାଳୟର ଦୃଶ୍ୟ ଆଧୁନିକ ସଭ୍ୟତାର ପୃଷ୍ଠଭୂମିରୂପେ ଏକ ଆଧୁନିକ ନଗରରୁ ଉପଭୋଗ କରି ହୁଏ । ମୁଁ କିନ୍ତୁ ଦେଖିବାକୁ ଚାହୁଁଥିଲି ପ୍ରାଚୀନ ପରମ୍ପରାଗତ ଏକ ଆରଣ୍ୟକ ଦେବତାତ୍ମାଙ୍କର ଦର୍ଶନ ଏବଂ ସେଥିପାଇଁ ପ୍ରୟୋଜନ ମଧ୍ୟ ପ୍ରଭୂତ ଶ୍ରମସ୍ୱୀକାର । କେଦାରନାଥ ଓ ବଦ୍ରୀନାଥ ତୀର୍ଥ ଦର୍ଶନରେ ମୋର ଏହି ଉଦ୍ଦେଶ୍ୟ ସିଦ୍ଧ ହୋଇଛି ।

ସେପ୍ଟେମ୍ବର ବାର ତାରିଖ ୧୯୬୦ ସାଲ ଦିନ ଲୋକସଭାର ସଭ୍ୟ ଶ୍ରୀ ଠାଙ୍ଗାର କର, ଶ୍ରୀ ଆର୍, ଡ଼ି, ପାଟିଲ, ଶ୍ରୀ ଚନ୍ଦ୍ରମଣି କାଲୋଙ୍କ ସଙ୍ଗେ ମୁଁ ଦିଲ୍ଲୀ ଗୁଡ଼ଲ ଗାଡ଼ିରେ ହରିଦ୍ୱାର ଅଭିମୁଖେ । ଚାରିଜଣ ମଧ୍ୟରୁ ପ୍ରଥମ ଦୁଇଜଣ ମହାରାଷ୍ଟ୍ରୀୟ, ଓ ଆମେ ଦୁଇଜଣ ଓଡ଼ିଆ । ବାହାରିବା ପୂର୍ବରୁ ଆମକୁ ସାବଧାନ କରାଇ ଦିଆଯାଇ ଥିବାରୁ ଦିଲ୍ଲୀରୁ କଲେରା ଇଞ୍ଜେକ୍‌ସନ୍ ନେଇ ବାହାରିଥିଲୁ । ଏହା ପୂର୍ବରୁ ମଧ୍ୟ ମୋର ଜଣେ ବନ୍ଧୁ କହିଥିଲେ କେଦାରନାଥ ଓ ବଦ୍ରୀନାଥ ଯାତ୍ରାରେ କଲେରା ହେଉ ନ ହେଉ, ହିଲ୍ ଡାଇରିଆ ବା ପେଟରୋଗସାର ହୋଇପାରେ, ଖିଆ ପିଆରେ ଟିକିଏ ଅସାବଧାନ ହେଲେ । କଲେରା ଇଞ୍ଜେକ୍‌ସନ୍ ସାର୍ଟିଫିକେଟ୍ ନଥିଲେ ଏ ସବୁ ସ୍ଥାନକୁ ଯିବାକୁ ଅନୁମତି ଦିଆଯାଏ ନାହିଁ ଓ ବାଟରେ ଇଞ୍ଜେକ୍‌ସନ୍ ଦିଆଯାଏ । ତେଣୁ ପ୍ରତିଷେଧ ମୂଳକ ବ୍ୟବସ୍ଥା କରିବାକୁ ପଡ଼ିଥିଲା । ଅବଶ୍ୟ ଆମେ ସେପ୍ଟେମ୍ବର ମାସରେ ଗଲୁଁ ଓ ସେତେବେଳେ ଯାତ୍ରୀଙ୍କର ଭିଡ଼ କମ ଥିଲା । ଯେଉଁମାନେ ଅସଲ ଭିଡ଼ ସମୟରେ ମଇ ଜୁନ ମାସରେ ଯାଆନ୍ତି, ସେମାନଙ୍କୁ ପୂର୍ବେ କଲେରା ଦୃଶ୍ୟ ଦେଖିବାକୁ ପଡୁଥିଲା ।

କେଦାରନାଥ ଓ ବଦ୍ରୀନାଥର ପଣ୍ଡାମାନଙ୍କୁ କଲେରା ପରି ଭୟାବହ ବୋଲି ମନେ କରି ଆମେ ତାହାଁର ମଧ୍ୟ ପ୍ରତିଷେଧମୂଳକ ବ୍ୟବସ୍ଥା କରିଥିଲୁ । ବର୍ତ୍ତମାନ ଅବଶ୍ୟ ପଣ୍ଡାମାନଙ୍କର ଦୌରାତ୍ମ୍ୟ ନାହିଁ, ବିଶେଷତଃ ଆମ ଭଳିଆ ଧୋବ ଧଉଳିଆ ଜନ୍‌ଷ୍ଟ୍ରେମ୍ୟ ଯାତ୍ରୀମାନଙ୍କ ଉପରେ । ବଦ୍ରୀନାଥ ମନ୍ଦିର ଗତ କେତେ'ବର୍ଷ ହେଲା ଗୋଟିଏ ଟ୍ରଷ୍ଟ କମିଟି ଦ୍ୱାରା ପରିଚାଳିତ ହେଉଛି । ସେହି କମିଟିର ମୁଖ୍ୟ କର୍ତ୍ତାଙ୍କ ପାଖକୁ ଆମେ ଲୋକସଭାର ଉକ୍ତ ଅଞ୍ଚଳର ସଦସ୍ୟ ଓ ବଦ୍ରୀନାଥ



ହରଦ୍ୱାରର ଘଣ୍ଟାସ୍ତମ୍ଭ


Digitized by srujanika@gmail.com

ଟ୍ରଷ୍ଟ କମିଟିର ଅନ୍ୟତମ ସଦସ୍ୟ ଶ୍ରୀ ଭକ୍ତଦର୍ଶନଙ୍କଠାରୁ ଗୋଟିଏ ପରିଚୟ ପତ୍ର ସଙ୍ଗରେ ନେଇ ଯାଇଥିଲୁ । କଲେରା ଇଞ୍ଜେକ୍ସନ୍ ସାର୍ଟିଫିକେଟ୍ ଓ ଏହି ପରିଚୟ ପତ୍ର ସଙ୍ଗରେ ଥିଲେ ଏ ଯାତ୍ରାରେ ନିରାପଦ ।

ତେର ତାରିଖ ସକାଳେ ଆମେ ହରିଦ୍ୱାରରେ ପହଞ୍ଚି ହର୍-କୀ-ପୈଡ଼ିରେ ସ୍ନାନ କରିବା ପାଇଁ ଗଲୁ । ସେଠାରେ ସୌଭାଗ୍ୟକ୍ରମେ ଖଣ୍ଡପଡ଼ାର ପଣ୍ଡିତ ଚନ୍ଦ୍ରଶେଖର ମିଶ୍ରଙ୍କ ସଙ୍ଗେ ଦେଖା ହେଲା । ସେ ଆମ୍ଭମାନଙ୍କୁ ସ୍କୁଲରେ ସଂସ୍କୃତ ପଢ଼ାଉଥିଲେ ଓ ମୁଁ ସ୍କୁଲ ଦିନରୁ ସଂସ୍କୃତ ବିଶେଷ ଭାବରେ ଅଧ୍ୟୟନ କରୁଥିବାରୁ ତାଙ୍କର ପ୍ରିୟଶିଷ୍ୟ ଥିଲି । ଠିକ୍ ଗଙ୍ଗାସ୍ନାନ ପରେ ଗୁରୁଦର୍ଶନ ପାଇ ବିଶେଷ କୃତକୃତ୍ୟ ହେଲି । ସ୍କୁଲ ଛାଡ଼ିବା ପରେ ପଣ୍ଡିତ ମିଶ୍ରଙ୍କ ସଙ୍ଗେ ଏହା ପୂର୍ବରୁ ଥରେ ମାତ୍ର ମୋର ଦେଖା ହୋଇଥିଲା ।

ସ୍ନାନ ପରେ ଆମର ବୟୋଜ୍ୟେଷ୍ଠ ସାଥୀ ଶ୍ରୀ ପାଟିଲ ପିତୃଶ୍ରାଦ୍ଧ ପାଇଁ ନିର୍ଦ୍ଦିଷ୍ଟ ଘାଟକୁ ଯାଇ ପୂର୍ବ ପୁରୁଷଙ୍କ ଉଦ୍ଦେଶ୍ୟରେ ପିଣ୍ଡଦାନ କରିଥିଲେ ।

ହରିଦ୍ୱାର ପାଖରେ କନଖଳ, ହୃଷିକେଶ ଓ ଲଛମନ ଝୁଲା ଦର୍ଶନୀୟ ସ୍ଥାନ ହୋଇଥିଲେ ସୁଦ୍ଧା ଆମେ ଏହା ପୂର୍ବରୁ ସେ ସ୍ଥାନମାନ ଦେଖିଥିବାରୁ ସିଧା କେଦାରନାଥ ଅଭିମୁଖେ ଯିବାର ସ୍ଥିର କଲୁ ।

ପାର୍ବତ୍ୟ ଅଞ୍ଚଳରେ ପଥ ସଂକୀର୍ଣ୍ଣ ଥିବା ଯୋଗୁଁ ଓ ଦୁଇଟି ମୋଟର ବିପରୀତ ଦିଗରୁ ଆସିଲେ ପରସ୍ପରକୁ ଅତିକ୍ରମ କରିବା ଅସମ୍ଭବ ହେଉଥିବା ଯୋଗୁଁ ଉଭୟ ଦିଗରୁ ନିର୍ଦ୍ଦିଷ୍ଟ ସମୟରେ ବସ୍ ଓ ଟ୍ରକ୍ ଆଦି ଛାଡ଼ନ୍ତି ଓ ତା ପରେ ଗେଟ୍ ବନ୍ଦ କରି ଦିଆଯାଏ । ରେଲ୍‌ଲାଇନ୍ ଯେଉଁଠି ଡବଲ୍ କରାଯାଇନାହିଁ, ସେଠାରେ ଅନ୍ୟ ଷ୍ଟେସନରୁ ସିଗ୍‌ନାଲ୍ ନ ଆସିବା ପର୍ଯ୍ୟନ୍ତ, ଗୋଟିଏ ଷ୍ଟେସନରୁ ଆର ଷ୍ଟେସନକୁ ଗାଡ଼ି ଛାଡ଼ି ଦିଆଯାଏ ନାହିଁ । ଠିକ୍ ସେହିପରି ଏହି ପାହାଡ଼ିଆ ରାସ୍ତାମାନଙ୍କରେ ଏକ ସମୟରେ ଏକ ଦିଗରୁ ନିର୍ଦ୍ଦିଷ୍ଟ ସଂଖ୍ୟକ ଗାଡ଼ି ଛାଡ଼ି ଦିଆଯାଏ ଓ ଏ ସବୁ ଗାଡ଼ି ମଧ୍ୟରୁ ଶେଷ ଗାଡ଼ିରେ ଗୋଟିଏ ସବୁଜ ପତାକା ଥାଏ ଓ ତାହାଁ ଆଗର ସବୁ ଗାଡ଼ିମାନଙ୍କରେ

ଲାଲ ପତାକା ସଙ୍କେତ ସ୍ୱରୂପ ଦିଆଯାଏ । ପରବର୍ତ୍ତୀ ସ୍ଥାନରେ ସବୁଜ ପତାକା ଗାଡ଼ି ପହଞ୍ଚି ଗଲେ ଜଣାଯିବ ଯେ ପଛରେ ଆଉ ଗାଡ଼ି ଆସୁନାହିଁ । କହିବା ବାହୁଲ୍ୟ ଯେ ଏ ପାହାଡ଼ିଆ ଅଞ୍ଚଳରେ ରାତିରେ ପ୍ରାୟ ଗାଡ଼ି ଚଳେ ନାହିଁ ।

ଏ ସବୁ କଷ୍ଟକଥା ଥିବା ଯୋଗୁଁ ଆମେ ଋଷିକେଶରୁ କେଦାର ନାଥ ଯିବା ଉଦ୍ଦେଶ୍ୟରେ ବସ୍‌ରେ ବାହାରିଲୁ ତିନିଟା ସମୟରେ । ରାସ୍ତାରେ ଏକ ପାଖରେ ଶହ ଶହ ଫୁଟ ତଳେ ଗଙ୍ଗାନଦୀ ଓ ଅନ୍ୟ ପାଖରେ ନଭସ୍ପର୍ଶୀ ପର୍ବତ । ଆମ ବାଆଁ ପଟେ ପର୍ବତର କେତେଠାରେ ପଥର ଓ ମାଟି ପଡ଼ି ରାସ୍ତାଟି ଆହୁରି ଅଣଓସାରିଆ ହେଉଛି ଓ କେଉଁଠି ଅଣଓସାରିଆ ରାସ୍ତାରୁ ମାଟି ପଥର ଖସି ରାସ୍ତା ଆହୁରି ସଙ୍କୀର୍ଣ୍ଣ ହେଉଛି । ଏହି ସବୁ ମରାମତି ପାଇଁ ଲୋକ ବରାବର ଲାଗିଛନ୍ତି । ମୁଁ ଯାତ୍ରାରେ ବାହାରିବା ପୂର୍ବରୁ, ମୋର ଜଣେ ଅଭିଜ୍ଞ ବନ୍ଧୁ ହିମାଳୟକୁ ଭଙ୍ଗା କାନ୍ଥ ସଙ୍ଗେ ତୁଳନା କରିଥିଲେ । ଏ ତୁଳନା ହୁଏତ ଅଳଙ୍କାର ଶାସ୍ତ୍ରସମ୍ମତ ନ ହୋଇପାରେ, ମାତ୍ର ଏ ପଥରେ ଭ୍ରମଣର ବିପଦର ସୂଚନା ଦିଏ । ଋଷିକେଶରୁ ପ୍ରଥମ କୋଡ଼ିଏମାଇଲ ରାସ୍ତାରେ ଏମିତି ବହୁ ସ୍ଥାନରେ ରାସ୍ତା ବରାବର ମରାମତି କରିବାକୁ ହେଉଥିଲା ଆମର ଯିବା ଆସିବା ସମୟରେ ।

ଭୂତତ୍ତ୍ୱବିଦ୍‌ମାନଙ୍କ ମତରେ ଯେଉଁଠାରେ ବର୍ତ୍ତମାନ ହିମାଳୟ ପର୍ବତମାଳା ଅଛି ତାହା ପ୍ରାଗୈତିହାସିକ ଯୁଗରେ ସମୁଦ୍ର ତଳେ ଥିଲା । ଭୂଭକ୍‌ର ପରିବର୍ତ୍ତନ ଫଳରେ ଏହା କାଳକ୍ରମେ ପୃଥିବୀର ସବୋଚ୍ଚ ପର୍ବତମାଳାରେ ପରିଣତ ହୋଇଛି । ଏହି ପର୍ବତମାଳାର ଉଚ୍ଚତାବୃଦ୍ଧି ଏ ପର୍ଯ୍ୟନ୍ତ ଶେଷ ହୋଇନାହିଁ । ଏହା ଧୀରେ ଧୀରେ ଆହୁରି ଉଚ୍ଚତର ହେଉଛି ବୋଲି ବୈଜ୍ଞାନିକମାନଙ୍କର ମତ । ସମଗ୍ର ପର୍ବତ ଉଚ୍ଚରୁ ଉଚ୍ଚତର ହେଉଥିବା ସଙ୍ଗେ ସଙ୍ଗେ ବହୁ ଅଞ୍ଚଳରେ ଉଚ୍ଚରୁ ପଥର ମାଟି ଖସି ବିପର୍ଯ୍ୟୟ ସୃଷ୍ଟି କରୁଥିବା ଦେଖିଲେ ମନେ ହୁଏ ପୃଥିବୀର ଏ ଧୂଳିଘର ଖେଳ ବାସ୍ତବିକ ଏକ ବିରାଟ ପ୍ରହେଳିକା ।

ଗଙ୍ଗାନଦୀର ଅବବାହିକାର ସମାନ୍ତର ଅଥଚ ନଦୀର ପତ୍ତନରୁ ବହୁ ଉଚ୍ଚରେ ଚାଲିଛି ଆମର ରାସ୍ତା । ଯେଉଁଠି ନଦୀରେ ଅନ୍ୟ ଏକ

ଉପନଦୀ ଆସି ମିଶିଛନ୍ତି. ସେଠାରେ ବନ୍ୟା ଯୋଗୁଁ ଫସଲକୁ (ନିହାଳ ପାଉଛନ୍ତି କାରଣ ଉପନଦୀକୁ ବନ୍ୟା ପାର ହେବ । କୌଣସି ପୋଲ ଉପରେ ଓ ନଦୀ ପତ୍ତନରୁ ଅତି ଉଚ୍ଚରେ ପୋଲ କରିବା ସମ୍ଭବ ନୁହେଁ । ତେଣୁ ଅନେକ ସ୍ଥାନରେ ବନ୍ୟା ଖୁବ୍ ଉପରକୁ ଉଠି ଯାଇ ଫସଲକୁ କ୍ଷତି ଆସେ, ମନୁଷ୍ୟର ଆଶା ଓ ବାସ୍ନା ଦରେ ।

ପାର୍ବତ୍ୟ ଅଞ୍ଚଳରେ ପାହାଡ଼ କଟାଯାଇ ସ୍ତର ସ୍ତର ହୋଇ ସମତଳ କରାଯାଇ ଧାନ ଚାଷ କରାଯାଏ । ଗୋଟିଏ କିଆରିରୁ ଆଉ ଗୋଟିଏ କିଆରି ହୁଏତ ଛଅ ସାତ ଫୁଟ୍ ଉଚ୍ଚ ଓ ଏଥିରେ ପଥରର ପକ୍କା ସ୍ତର ଦିଆ ଯାଇଛି । ଶରତ୍ କାଳରେ ଏହି ପାହାଡ଼ୀ ଧାନ ଚାଷର ଦୃଶ୍ୟ ଅତି ମନୋହର । ପର୍ବତ କି ପେଟରେ ନଦୀର ପତ୍ତନରୁ ଗୋଟିକ ପରେ ଗୋଟିଏ ପାହାଚ ଶହ ଶହ ସଂଖ୍ୟାରେ ଉଠି ଶିଖର ସ୍ଥିତ ମେଘରେ ବିଲୀନ ହେବାରୁ ସ୍ୱର୍ଗ ପର୍ଯ୍ୟନ୍ତ ଯାଇଛନ୍ତି ପରି ଜଣାପଡ଼େ । ଏହି ଦୃଶ୍ୟ ଦେଖିଲେ କବି କାଳିଦାସଙ୍କର ମେଘଦୂତର କଥା ମନେ ପଡ଼େ; ଯେଉଁଠି ସେ ମେଘ ଦୂତକୁ ଗୌରୀ ଓ ଶଙ୍କରଙ୍କର ହିମାଳୟ ଆରୋହଣ ପାଇଁ ସୋପାନ ରୂପେ କଳ୍ପନା କରି ଅଛନ୍ତି—

"ହିତ୍ୱା ତସ୍ମିନ୍ ଭୁଜଗ ବଲୟଂ
ଶମ୍ଭୁନା ଦତ୍ତହସ୍ତା
କ୍ରୀଡ଼ାଶୈଳେ ଯଦି ଚ ବିଚରେତ୍
ପାଦଚାରେଣ ଗୌରୀ
ଭଙ୍ଗୀ ଭକ୍ତ୍ୟା ବିରଚିତ ବପୁଃ
ସ୍ତମ୍ଭିତାନ୍ତର୍ଜଳୌଘଃ
ସୋପାନତ୍ୱଂ କୁରୁ ମଣିତଟା—
ରୋହଣାୟାଗ୍ରଯାୟୀ ।

ଏ ଦୃଶ୍ୟ ଦେଖି କୋରାପୁଟ ଫୁଲବାଣୀର 'ପୋଡ଼ୁ' ଚାଷର କଥା ମନେ ପଡ଼ିଲା । ସେଠି ମନୁଷ୍ୟ ଗଛ ଜାଳି ଦେଇ ଥରେ ଚାଷ କରି ଭୂମିକୁ ଶ୍ରୀହୀନ କରି ଛାଡ଼ି ଦିଏ । ଏଠାରେ ପ୍ରକୃତି ଓ ମାନବର ସମ୍ମିଳନରେ ରଚିତ ହୋଇ ଉଠିଛି ଏକ ଶସ୍ୟ ବାପଣୀ । ସେମିତି ଝାଙ୍କର ପର୍ବତରୁ ବାହାରର ଧୂଆଁର ପର୍ଦ୍ଦ ଶ୍ୟାମ, ଏଠି ଗଢ଼ି ଉଠେ

ଧାନର ସ୍ୱର୍ଗାଭିମୁଖୀ ଭ୍ରଗତ ମେଘର ଆଶୀର୍ବାଦ ପାଇବା ପାଇଁ । ଯେଉଁଠି ଦରିଦ୍ରତା ପ୍ରକୃତିଠାରୁ ହାରମାନି ନିଜେ ନଗ୍ନ ହୋଇ ପ୍ରକୃତିକୁ ଉଲଗ୍ନ କରୁଛି; ଏଠି କିନ୍ତୁ ସେହି ଦରିଦ୍ରତା ନିଜେ ଛିନ୍ନ, ମଳିନ ବସନରେ ଆବୃତ ହୋଇ ପ୍ରକୃତିକୁ ଏକ ଅଭିନବ, ଲୋଭନୀୟ, ସବୁଜ କୌଶେୟ ବସନରେ ବିଭୂଷିତ କରୁଛି । କେତେ ପରିଶ୍ରମରେ ଏତେ ଉଚ୍ଚ ପର୍ବତରେ ଏପରି ପକ୍କା ଅଥଚ ସମାନ୍ତରାଳ ପ୍ରାୟ ଓ ସୁଦୃଶ୍ୟ ହିଡ଼ ଦେଇ ସମତଳ ଖେତ ତିଆରି କରାଯାଇଛି, ତାହା ଆମ ପକ୍ଷରେ ବୁଝିବା କଷ୍ଟକର । କିନ୍ତୁ ଏପରି ପର୍ବତମାନ ଦେଖିଲେ ଏହାର ସ୍ନିଗ୍ଧ ଶୃଙ୍ଖଳା ଦେଖି ମନ ଆନନ୍ଦିତ ହୁଏ ।

ତେର ତାରିଖ ରାତିରେ ଆମେ ଦେବପ୍ରୟାଗରେ ପହଞ୍ଚିଲୁ । ଦେବପ୍ରୟାଗ ଭାଗୀରଥି ଓ ଅଳକନନ୍ଦା ନଦୀ ଦୁଇଟିର ସଙ୍ଗମସ୍ଥଳ । ଭାଗୀରଥି ନଦୀ ହିଁ ଅସଲ ଗଙ୍ଗା । ଭାଗୀରଥି ଓ ଅଳକନନ୍ଦାର ସଙ୍ଗମ ବାସ୍ତବିକ ଦେବପ୍ରୟାଗ ନାମରେ ଖ୍ୟାତ ହେବାର ଉପଯୁକ୍ତ । କାରଣ ଏକ ସ୍ୱର୍ଗୀୟ ବାତାବରଣରେ ଉଭୟ ନଦୀର ମିଳନ; ଅଚଞ୍ଚଳ, ଗମ୍ଭୀର । ଉଭୟ ନଦୀର ସଙ୍ଗମ ସ୍ଥଳରେ ରଘୁନାଥ ମନ୍ଦିର ଅବସ୍ଥିତ । ଆମେ ରାତିରେ ପହଞ୍ଚି ତହିଁ ଆର ଦିନ ବଡ଼ ଭୋରରୁ ପାଞ୍ଚଟାରେ ଅର୍ଥାତ୍ ପହିଲି ଗେଟ୍‌ରେ ସ୍ଥାନଟି ଛାଡ଼ି ଦବାକୁ ଥିବାରୁ ସଙ୍ଗମ ସ୍ଥଳର ଦୃଶ୍ୟ ସେ ରାତିରେ ଉପଭୋଗ କରି ପାରି ନଥିଲୁ ।

ଚଉଦ ତାରିଖ ସକାଳେ ପ୍ରାୟ ସାତଟାରେ ଶ୍ରୀନଗର ବୋଲି ଛୋଟିଏ ଗ୍ରେଟ୍ ଗାଁରେ ପହଞ୍ଚିଲୁ ଓ ଅନ୍ୟ ବସ୍‌ରେ ରୁଦ୍ରପ୍ରୟାଗ ଅଭିମୁଖେ ଦଶଟା ବେଳେ ଯାତ୍ରା କଲୁ ଓ ସେଠାରେ ପ୍ରାୟ ବାରଟାରେ ପହଞ୍ଚିଲୁ । ରୁଦ୍ରପ୍ରୟାଗ ଅଳକନନ୍ଦା ଓ ମନ୍ଦାକିନୀ ନଦୀର ସଙ୍ଗମସ୍ଥଳ । ଏଠାରେ ଅଳକନନ୍ଦାର ରୁଦ୍ରମୂର୍ତ୍ତି ଓ ମନ୍ଦାକିନୀର ଶିବମୂର୍ତ୍ତି—ଅଳକନନ୍ଦାର ଫେନିଳ ଗର୍ଜନ ଓ ମନ୍ଦାକିନୀର ଶାନ୍ତ ସମତଳ ଗତିର ବିରୋଧ ଆମକୁ ମୁଗ୍ଧ କରିଥିଲା । ଉଭୟ ନଦୀର ସଙ୍ଗମ ସ୍ଥଳକୁ ସ୍ନାନ କରିବା ପାଇଁ ଗଲୁ । ଏଠାରେ ପାଣି ଅତି ଥଣ୍ଡା ଥିବାରୁ ସ୍ନାନ କରିବା କଷ୍ଟକର ହେଲା ।

ରୁଦ୍ରପ୍ରୟାଗ, ମନ୍ଦାକିନୀ ଓ ଅଳକନନ୍ଦାର ମିଳନ ସ୍ଥଳ । ଏହା କେଦାରନାଥ ଓ ବଦ୍ରୀନାଥ ରାସ୍ତାର ମିଳନ ସ୍ଥଳ ମଧ୍ୟ । ଏଥିପାଇଁ ଏହି



ରୁଦ୍ରପ୍ରୟାଗ—ଅଲକନନ୍ଦା ଓ ମନ୍ଦାକିନୀର ସଙ୍ଗମ ସ୍ଥଳ


Digitized by srujanika@gmail.com

ସ୍ଥାନର ପ୍ରାଧାନ୍ୟ । ଏହା ଗୋଟିଏ ଛୋଟ ସହର ଓ ଏଠାରେ ପ୍ରବଳ ଯାତ୍ରା ପାଇଁ ଯାବତୀୟ ପ୍ରୟୋଜନୀୟ ପଦାର୍ଥ ତଥା ଶୀତବସ୍ତ୍ର, ଜୋତା, ଛତା, ଲାଠି, ଲଣ୍ଠନ ଟର୍ଚ୍ଚ ଆଦି ସବୁ ମିଳେ । ମନ୍ଦାକିନୀର ଉପତ୍ୟକାରେ ନଦୀର କୂଳେ କୂଳେ କେଦାରନାଥକୁ ରାସ୍ତା ଯାଇଛି ୪୮ ମାଇଲ ଓ ଅଳକନନ୍ଦାର କୂଳେ କୂଳେ ବଦ୍ରୀନାଥକୁ ରାସ୍ତା ଯାଇଛି ୮୮ ମାଇଲ ।

ଆମେ ମନ୍ଦାକିନୀର କୂଳେ କୂଳେ ରୁଦ୍ରପ୍ରୟାଗ ଠାରୁ ୨୨ ମାଇଲ ଦୂର 'କୁଣ୍ଡ' ପର୍ଯ୍ୟନ୍ତ ବସ୍‌ରେ ଗଲୁଁ । ବାଟରେ ଅଗସ୍ତ୍ୟମୁନିଙ୍କ ଆଶ୍ରମ । ଏକଦା ସମୁଦ୍ରକୁ ଚଳୁ କରିଥିବା ଋଷି ଏହି ସ୍ଥାନରେ ତପସ୍ୟା କରିଥିଲେ । ଏଠାରେ କ୍ଷୀଣତୋୟା ମନ୍ଦାକିନୀର ଜଳରେ ତାଙ୍କର କଣ୍ଠ ଶୁଖି ନ ଥିବ, କାରଣ ତପସ୍ୱୀମାନେ ସବୁ ସହି ପାରନ୍ତି । ଏଠାରେ ଉଡ଼ାଜାହାଜ ଓହ୍ଲାଇ ପାରିବା ଭଳିଆ ସମତଳ ଭୂମି ଟିକିଏ ଅଛି ।

'କୁଣ୍ଡ'ରେ ପହଞ୍ଚିଲୁ ପ୍ରାୟ ସାଢ଼େ ତିନିଟାବେଳେ । ସେଠାରୁ ସେଦିନ ପଦବ୍ରଜରେ ଯିବାକୁ ହେବ, ପଦବ୍ରଜରେ ଅଢ଼େଇ ମାଇଲ ଗୁପ୍ତକାଶୀ ପର୍ଯ୍ୟନ୍ତ । ଅଢ଼େଇ ମାଇଲ ରାସ୍ତାରେ କିନ୍ତୁ ପ୍ରାୟ ଦେଢ଼ହଜାର ଫୁଟ୍ ଉପରକୁ ସର୍ପିଳ ପଥରେ ଉଠିବାକୁ ହେବ । ପ୍ରତି ଦୁଇ ତିନି ଫର୍ଲଙ୍ଗ୍‌ରେ ଆମେ ବିଶ୍ରାମ ନେଉଥାଉଁ । ବନ୍ଧୁମାନଙ୍କ ମଧ୍ୟରୁ ଦୁଇଜଣ ମେଦୋବହୁଳ ଓ ବୃଦ୍ଧପ୍ରାୟ ବନ୍ଧୁ, ଶ୍ରୀ ପାଟିଲଙ୍କ ବୟସ ୬୭ ବର୍ଷ । ଆମ୍ଭେମାନେ ଥକି ଗଲାବେଳେ ମୁଁ ସାନ୍ତ୍ୱନା ଦେଲି ଯେ ଆମର ତୀର୍ଥଯାତ୍ରା ଫଳରେ ପାପର ଲାଘବ ହେଉ ନ ହେଉ ମେଦର ଲାଘବ ଯଥେଷ୍ଟ ହେବ । ଯେଉଁଠାରେ ପର୍ବତ ଉପରେ ଉଠିବାକୁ ଅଧିକ ପରିଶ୍ରମ ଲାଗେ, ସେଠାରେ ଟିକିଏ ବିଶ୍ରାମ ନେଇ ଚା, ଦୁଧ, ଜଳଖିଆ ଖିଆଯାଏ । ଏ ଅଢ଼େଇ ମାଇଲରେ ଦୁଇଟି ଚା ଜଳଖିଆ ଦୋକାନ । ଏ ରାସ୍ତା ଥିଲା ଆମ ପଥିକତାର ପ୍ରଥମ ପରୀକ୍ଷା । ଆମେ ଅଧାରୁ ଅଧିକ ରାସ୍ତା ନ ଯାଉଣୁ କ୍ଳାନ୍ତ ହୋଇ ପଡ଼ିଲୁଁ । ଗୁପ୍ତକାଶୀକୁ ପହଞ୍ଚିବାକୁ ଆଉ ଅଧ ମାଇଲ ବାକି ଅଛି ଆମେ ଏକ ପଣ୍ଡା ଗୋଷ୍ଠୀର ହାବୁଡ଼ରେ ପଡ଼ିଲୁଁ । ଫୁଲର ଗନ୍ଧରେ ମହୁମାଛି ଯେପରି ବିଭୋର ହୁଏ, ସେମାନେ ଆମକୁ ଦେଖି ସେହିପରି ବିଭୋର

ହେଲେ । ଏ ପ୍ରକାର ପରିସ୍ଥିତିରେ ପ୍ରଥମ ପ୍ରଶ୍ନ ହୁଏ 'ଆପଣମାନେ କେଉଁ ଜିଲ୍ଲାର ?" ଆମର ମରାଠୀ ବନ୍ଧୁମାନେ କହିଲେ, "ଆମେ ଓଡ଼ିଶାର ।" "ଓଡ଼ିଶା କେଉଁଠି ?" ଏ ପ୍ରଶ୍ନ ଯଦି ପଣ୍ଡାମାନଙ୍କୁ ପଚରା ଯାଇଥାନ୍ତା ତେବେ ସେମାନେ ତାହାର ଉତ୍ତର ଦେଇପାରି ନ ଥାନ୍ତେ । କାରଣ ସେ ଅଞ୍ଚଳର ଲୋକେ ଜଗନ୍ନାଥ ପୁରୀ କହିଲେ ଯେତେ ବୁଝନ୍ତି ଓଡ଼ିଶା କହିଲେ ଠିକ୍ ବୁଝି ପାରନ୍ତି ନାହିଁ । ଏପରିକି ଏ ଅଞ୍ଚଳର ଜଣେ ଉଚ୍ଚ ଶିକ୍ଷିତ ଡାକ୍ତରଙ୍କଠାରୁ ମୁଁ ବୁଝିଲି ଯେ ଉତ୍ତର ପ୍ରଦେଶ ଓ ବଙ୍ଗ ପ୍ରଦେଶ ମଧ୍ୟରେ ଯେଉଁ ଅଞ୍ଚଳ, ତାକୁ ବିହାର କହନ୍ତି, ଓଡ଼ିଶା ବି କହନ୍ତି । 'ଲଓସ୍' ଓ 'ଲଗୋସ୍' ଅଞ୍ଚଳ ମଧ୍ୟରେ କଣ ପାର୍ଥକ୍ୟ, ତାହା ଉତ୍ତର ଭାରତର ଯେଉଁମାନେ ବୁଝିନପାରି ସହିତ ଦେଇ ପାରିବେ, ସେମାନେ ବିହାର ଓ ଓଡ଼ିଶାର ଭୌଗୋଳିକ ପାର୍ଥକ୍ୟ ସହଜରେ କହି ପାରିବେ ନାହିଁ । କେତେ ମାସ ତଳେ ଭାରତ ସରକାରଙ୍କ ଦ୍ୱାରା ପ୍ରକାଶିତ 'ସମାଜ କଲ୍ୟାଣ' ମାସିକ ପତ୍ରରେ 'ବିହାର' ସମାଜ କଲ୍ୟାଣ ବୋର୍ଡର ସଭାନେତ୍ରୀ ମିସ୍ ଡଲି ସେନାପତିଙ୍କ ମୃତ୍ୟୁରେ ଶୋକ ପ୍ରକାଶ ବାର୍ତ୍ତା ପ୍ରକାଶିତ ହୋଇଥିଲା ।

ଭକ୍ତଦର୍ଶନ ଏମ୍. ପି.ଙ୍କ ସୁପାରିଶ୍ ପତ୍ର ଆମେ ସଙ୍ଗରେ ନେଇ ଥିବାରୁ କେଦାରନାଥ ଟ୍ରଷ୍ଟ ବିଶ୍ରାମ ଗୃହରେ ରହିଲୁ । ଅବଶ୍ୟ ଏସବୁ ଅଞ୍ଚଳରେ ସର୍ବତ୍ର କାଲୀକମ୍ବଲୀ ବାଲା ବାବାଜୀଙ୍କ ଧର୍ମଶାଳା ସବୁଠାରେ ଓ ସେଠାରେ ସବୁ ଯାତ୍ରୀଙ୍କ ପାଇଁ ଅବାରିତ ଦ୍ୱାର । ଅବଶ୍ୟ ଏହା ବାହାରେ ଚଟିଘର ବା ବସାଘରମାନ ସବୁଠାରେ ଅଛି ।

ଗୁପ୍ତକାଶୀରେ ବିଶ୍ୱନାଥ ମନ୍ଦିର ପ୍ରସିଦ୍ଧ । ତାହା ପାଖରେ ଆମର ବିଶ୍ରାମ ଗୃହ । ସେ ଦିନ ସନ୍ଧ୍ୟା ଆରତି ସମୟରେ ଆମେ ସୁବିଧାରେ ଉପସ୍ଥିତ ହେଲୁ । ସେ ଦିନ ରାତିରେ ପଣ୍ଡାମାନେ ଆମମାନଙ୍କ ପାଇଁ ନବାଗତ ଅତିଥିରୂପେ ସବୁ ପ୍ରକାର ସୁବିଧା କରିଦେଲେ । ଶୋଇଲାବେଳେ ପ୍ରତ୍ୟେକଙ୍କର ଜାତି, ଗୋତ୍ର, ପିତା, ପିତାମହ, ପ୍ରପିତାମହ, ପୁଅ, ନାତି, ଭାଇ, ଭାଇମାନଙ୍କର ପୁଅ, କକା ଓ କକାମାନଙ୍କର ପୁଅ ଓ ନାତିଙ୍କର ନାମ ଟିପି ନେଲେ । ମୋର ସ୍ମୃତି ଶକ୍ତି ପାଇଁ ମୁଁ ଅନେକ ସମୟରେ ଅକାରଣରେ ନିଜକୁ ଖୁବ୍ ବାହାଦୁର ଦିଏ । କିନ୍ତୁ କକାମାନଙ୍କର ନାତି ଓ ପଣନାତିମାନଙ୍କର ନାମ ଥରକୁ ଥର ଅନୁଭୂତି

କରିବାରେ ଅସମର୍ଥତା ଯୋଗୁଁ ମୁଁ ଆମ୍ଭ ବଂଶାବଳି ହରାଇବସିଲି । କେଦାରନାଥ ଓ ବଦ୍ରୀନାଥ ଯାତ୍ରା କାଳରେ ବିଭିନ୍ନ ସ୍ଥାନରେ ପ୍ରାୟ ପାଞ୍ଚ ଛଅ ଥର ଆମ୍ଭମାନଙ୍କୁ ନିଜ ନିଜର ବିସ୍ତୃତ ବଂଶ ବିବରଣୀ ଦେବାକୁ ପଡ଼ିଲା । କିନ୍ତୁ ମୁଁ ପ୍ରତ୍ୟେକ ଥର ମୋର କେତେ ବଂଶଜମାନଙ୍କର ନାମ ଭୁଲି ଯାଏ, ତାହା ଏବେ ମନେ କଲେ ବାସ୍ତବିକ ମୁଁ ବିସ୍ମିତ ଓ ଲଜ୍ଜିତ ହୁଏ । ମୋର ମୃତ୍ୟୁପରେ ଯେଉଁମାନେ ପ୍ରତିବର୍ଷ ମୋତେ ମନେ ପକାଇ ଶ୍ରଦ୍ଧାରେ ତର୍ପଣ କରିବେ ସେମାନଙ୍କର ନାମ ସୁଦ୍ଧା ଆଜିଠାରୁ ବିସ୍ମୃତ ହେବା ମୋ ପକ୍ଷରେ ଭୁଲ ନୁହେଁ କି ?

ସେ ଦିନ ରାତିରେ ଶୋଇଲା ବେଳେ ସ୍ଥିର ହେଲା ଯେ ତହିଁ ଆରଦିନ ସତର ମାଇଲ ବାଟ ଯିବାକୁ ହେବ ଓ ସେଥିପାଇଁ ଘୋଡ଼ାରେ ଯିବାର ବ୍ୟବସ୍ଥା କରାଯିବ । ପଣ୍ଡାମାନେ ଏ ବ୍ୟବସ୍ଥା କରିବା ପାଇଁ ରାଜି ହେଲେ ଓ ଆମେ ନିଶ୍ଚିନ୍ତରେ ଶୋଇଲୁ !

ପନ୍ଦର ତାରିଖ ସେପ୍ଟେମ୍ବର ସକାଳ । ଗୁପ୍ତକାଶୀରୁ ମନ୍ଦାକିନୀ ବାହାର ସନ୍ଧ୍ୟା ସୁଦ୍ଧା ଆମକୁ ଗୌରୀକୁଣ୍ଡରେ ପହଞ୍ଚିବାକୁ ହେବ । ଆମକୁ 'ଯଥାଶୀଘ୍ର ଉଭୟ ତୀର୍ଥଯାତ୍ରା' ଶେଷକରି ବିଜୟା ଦଶମୀ ପୂର୍ବରୁ ଘରକୁ ପହଞ୍ଚିବାର ଥିଲା । ତେଣୁ ସେ ଦିନ ସତରମାଇଲ ଯିବାର କଥା । ଏ ସତର ମାଇଲ ପୁଣି 'ଉନ୍ନତ-ଅଭ୍ୟୁଦୟ-ବନ୍ଧୁର-ପଥ' ଅର୍ଥାତ୍ କ୍ରମାଗତ ଉଠାଣି ଓ ତଳକୁ ଓହ୍ଲାଇବା । ସତରମାଇଲ ମଧ୍ୟରେ ସମୁଦ୍ର ପତନରୁ ଚାରି ହଜାର ଫୁଟରୁ ପ୍ରାୟ ସାଢ଼େ ସାତ ହଜାର ଫୁଟ ପର୍ଯ୍ୟନ୍ତ ଉଠିବାକୁ ହେବ । କିନ୍ତୁ ଏଥିରୁ ଅନେକଠାରେ ଥରେ ହଜାରେ ଫୁଟ ଉଚ୍ଚକୁ ଉଠି ପୁଣି ସାଇଲେ ରାସ୍ତାରେ ସାତ ଆଠ ଶହ ଫୁଟ୍ ଓହ୍ଲାଇ ଯିବାକୁ ହୁଏ, ଯେଉଁଠାରେ ଗୋଟିଏ ଝରଣା ଆସି ମନ୍ଦାକିନୀରେ ମିଶିଛି ।

ଏ ଅଞ୍ଚଳର ସ୍ତ୍ରୀ ଲୋକମାନେ ପୁରୁଷମାନଙ୍କଠାରୁ ଅଧିକ ପରିଶ୍ରମୀ ବୋଲି ମନେ ହେଲା । କାରଣ ଅଧିକାଂଶ ସ୍ଥାନରେ ସ୍ତ୍ରୀମାନେ ଘାସର ଭାର ବୋଝ ପିଠିରେ ବୋହି ନେଉଥିବାର ପ୍ରାୟ ସର୍ବତ୍ର ଦେଖାଯାଏ । ମଧ୍ୟବିତ୍ତ ଗୃହର ସ୍ତ୍ରୀମାନେ ମଧ୍ୟ ବଡ଼ ଝୁଡ଼ ଭଳିଆ ପିଠିରେ ଧରି ସେଥିରେ ଜିନିଷପତ୍ର ନିଆ ଅଣା କରନ୍ତି । ଅଶୀ ବର୍ଷରୁ ଅଧିକ ବୟସର ବୁଢ଼ୀମାନେ ମଧ୍ୟ ସ୍ୱଚ୍ଛନ୍ଦରେ ପର୍ବତରାସ୍ତାରେ ଭାରି ପଥର ବୋଝ ପିଠିରେ ଲଦି ନେଉଥିବାର ଦେଖିଲୁ । ପୁରୁଷମାନେ ଏ ପ୍ରକାର କାମ

ଖୁବ୍ କମ୍ କରନ୍ତି । ଯାତ୍ରୀମାନଙ୍କର ବୋଝ ବୋହିବା ଲୋକଙ୍କ ମଧ୍ୟରୁ ନେପାଳୀମାନଙ୍କ ସଂଖ୍ୟା ଖୁବ୍ ବେଶୀ; ସ୍ଥାନୀୟ ଗଡ଼ବାଲମାନଙ୍କର ସଂଖ୍ୟା ଖୁବ୍ କମ୍ । ଗଡ଼ବାଲମାନଙ୍କର ସୈନ୍ୟ ବିଭାଗରେ ଭଲ ନାମ ଅଛି ।

ଆମ ଅଞ୍ଚଳରେ ଘର ଜିନଷକୁ ଲୋକେ ସାଧାରଣତଃ ଖରରେ କାନ୍ଧେଇ ନିଅନ୍ତି, ନ ହେଲେ ମୁଣ୍ଡରେ ଲଦ ନିଅନ୍ତି । ଏ ଅଞ୍ଚଳରେ କିନ୍ତୁ ସବୁ ଜିନଷ ପିଠିରେ ବୋହି ନିଅନ୍ତି । ଆମର ସୁରଜଣଙ୍କର ଜିନଷ ପତ୍ର ମିଶି ପ୍ରାୟ ପଚିଶ ସେର ଓଜନ ବୋହିବା ପାଇଁ ଜଣେ ନେପାଳୀ କୁଲିକୁ ଆମେ ରୁଦ୍ରପ୍ରୟାଗଠାରେ ଠିକଣା କରିଥିଲୁଁ ।

ଯାତ୍ରୀମାନଙ୍କ ମଧ୍ୟରୁ ଯେଉଁମାନେ ଧନୀ ଓ ଅଭିଜାତ, ସେମାନେ 'ଡାଣ୍ଡି'ରେ ଯାଆନ୍ତି । 'ଡାଣ୍ଡି' ଇଉରୋପୀୟ ସେଡ଼ାନ୍ ଚେୟାରର ଭାରତୀୟ ସଂସ୍କରଣ । ଗୋଟିଏ ଆରାମ୍ ଚେୟାର୍‌ରେ ଯାତ୍ରୀ ବସିବେ ଓ ତାକୁ ସବାରରେ ବୋହି ନେଲା ପରି ସୁରଜଣ ବୋହିବେ । ଏମାନଙ୍କଠାରୁ ଅଳ୍ପ ସାମର୍ଥ୍ୟ ବିଶିଷ୍ଟ ଲୋକେ ବା କମ୍ ଓଜନ୍ ଥିବା ବୁଢ଼ା ବୁଢ଼ୀମାନେ 'କଣ୍ଡି' କରି ଯାଆନ୍ତି । ଏଥିରେ ଜଣେ ଯାତ୍ରୀଙ୍କୁ ପିଠିରେ ଝୁଡ଼ି ଉପରେ ବସାଇ ଜଣେ ଲୋକ ବୋହିନିଏ । ଏଥିରୁ କମ୍ ସାମର୍ଥ୍ୟ ଥିବା ଲୋକେ ଘୋଡ଼ାରେ ଓ ଅନ୍ୟମାନେ ଚାଲି କରି ଯାଆନ୍ତି ।

ଆମେ ଶୀଘ୍ର ଯାତ୍ରା ଶେଷ କରିବା ଉଦ୍ଦେଶ୍ୟରେ ଗୁପ୍ତକାଶୀଠାରୁ କେଦାରନାଥ ପର୍ଯ୍ୟନ୍ତ ଯିବା ଓ ଫେରିବା ପାଇଁ ଘୋଡ଼ା ଭଡ଼ା କଲୁ । ସୁର ଘୋଡ଼ା ମଧ୍ୟରୁ ଦୁର୍ଭାଗ୍ୟ ବଶତଃ ମୋର ଘୋଡ଼ା ସବୁଠାରୁ ଦୁର୍ବଳ ଥିଲା । ତାହାର ଜିନ୍ ଓ ଲଗାମ ଠିକ୍ ନଥିଲା ଓ ଘୋଡ଼ାବାଲା କୁଜା ଓ ବାମନ ଥିଲା । ମୁଁ ଭାବିଲି ମୁଁ ଏ ଯାତ୍ରାରେ ଠିକ୍ ସ୍ପେନ୍ ଲେଖକ ମାର୍ଭେଣ୍ଟିସ୍ ବର୍ଣ୍ଣିତ ଡନ୍ କୁଇକୋସଟଙ୍କ ପରି ଦେଖାଯାଉଥିବି ।

ବହୁଦିନ ସୁକୁମାର ଜୀବନ ଯାପନ ପରେ ବାତାନୁକୂଳିତ ବାତାବରଣରେ ଅବସ୍ଥାନ ଓ ଟେକ୍ସି ବସ୍-ଯାନ ଅଭ୍ୟାସ ପରେ, ହଠାତ୍ ଦିନକ ମଧ୍ୟରେ ସତର ମାଇଲ ଘୋଡ଼ାରେ ଯିବା କଷ୍ଟକର ବ୍ୟାପାର । ସକାଳର ସ୍ନିଗ୍ଧ ଶୀତଳତା ଓ ହିମାଳୟର ଶୋଭା ଆମର ଶାରୀରିକ କ୍ଳାନ୍ତିକୁ ଅନେକ ପରିମାଣରେ ଦୂର କରୁଥିଲା । ମଝିରେ ଧୂସରପଙ୍କସ୍ତୂପ ଭ... ଦୁର୍ଗମ୍ୟ ପଥ । ବାମ ପଟରେ ତୁଙ୍ଗ ପର୍ବତ ଆକାଶ ସଙ୍ଗେ ମିଶି ଯାଉଛି



ମନ୍ଦାକିନୀ ଉପରେ ଝୁଲପୋଲ

ବା ମେଘ ଓ କୁହୁଡ଼ିଭିତରେ ଅଦୃଶ୍ୟ ହେଉଛି । ଦକ୍ଷିଣରେ ନିମ୍ନ ଗଭୀର ଗର୍ତ୍ତ ତଳେ ମନ୍ଦାକିନୀର ଝର୍ ଝର୍ ଶବ୍ଦ ଜଳ ପ୍ରପାତ ଶବ୍ଦ ପରି ଶୁଭୁଛି । ଅନନ୍ତ ସ୍ୱର୍ଗ ଓ ଅତଳ ପାତାଳ ମଧ୍ୟରେ ଯେପରି କ୍ଷୀଣ ମର୍ତ୍ତ୍ୟର ସଂକୀର୍ଣ୍ଣ ରେଖା ଲମ୍ବି ଯାଇଛି ପାର୍ବତ୍ୟ ପଥରୂପେ । ଅଳ୍ପ ଯେଉଁଠି ଟିକିଏ ସମତଳ ସ୍ଥାନ ଅଛି, ବା ଯେଉଁଠି ଅତ୍ୟନ୍ତ ଏତେ ଗହ୍ୱର ନୁହେଁ, ସେଠି ଗଢି ଉଠିଛି ଗୋଟିଏ ଗୋଟିଏ ଛୋଟ ଗାଁ ବା ଚଟି । ପର୍ବତ କାଟି ଭୂଆଁର କରା-ଯାଇଛି ଖେତ ଯେଉଁଠି ଧାନ ବା ମାଗୁ ଶସ୍ୟର ଲାଲ୍ ପାଟଳ ଓ ସବୁଜ ରଙ୍ଗ ସୌନ୍ଦର୍ଯ୍ୟର ଇନ୍ଦ୍ରଜାଲ ସୃଷ୍ଟି କରୁଛି । କେଉଁଠି ପାଇନ୍ ଜାତୀୟ ମହୀରୁହ ସମାନ୍ତରାଳ ଭାବେ ବଢି ଉଠୁଛି । କେଉଁଠି ପାର୍ବତ୍ୟ ପୃଷ୍ଠ ଭୂମିରେ ଦେଖା ଯାଉଛି ଏକମାତ୍ର ଧଳା କୋଠା—ପ୍ରକୃତିର ସମୃଦ୍ଧ ପରିବେଶରେ ନିଃସଙ୍ଗ ସଭ୍ୟତା ପରି । ଏ କୋଠାର ଅଧିବାସୀ ନିଶ୍ଚୟ ତପସ୍ୱୀ ହୋଇ ଥିବେ, ନ ହେଲେ ଭାବୁଥିବେ:—

"ଦେଖାଇ ନେତ୍ର ଯାହା ଚନ୍ଦ୍ର ଦର୍ପଣ
ମୋ ସଦର ଅଟଇ ମୁଁ ଅର୍ଦ୍ଧାଙ୍ଗୀର"

ହିମାଳୟର ଶୋଭାର ଉପଯୁକ୍ତ ବର୍ଣ୍ଣନା କେବଳ ଉଚ୍ଚକୋଟିର କବିମାନେ କରି ପାରିବେ । ମୁଁ ଦେଖୁଥିଲି ମାତ୍ର ଓ ମୁଗ୍ଧ ହେଉଥିଲି ଅବଶ୍ୟ ସାବଧାନତାର ସହିତ । କାରଣ ଯାତ୍ରୀମାନଙ୍କୁ ସାବଧାନ କରାଇ ଦିଆଯାଇଥାଏ ଯେ ବାଟ ଚାଲିବା ଓ ସୌନ୍ଦର୍ଯ୍ୟ ନିରୀକ୍ଷଣ ଏକା ସାଙ୍ଗରେ ହୋଇ ପାରିବ ନାହିଁ । କାରଣ ଯାତ୍ରୀମାନେ ଯଦି ହିମାଳୟର ଶୋଭା ନିରୀକ୍ଷଣ କରୁ କରୁ କେଉଁଠି ଝୁଣ୍ଟି ପଡ଼ି ରାସ୍ତାରୁ ଖସିଯାନ୍ତି ତେବେ ସଦ୍ୟ ଗଙ୍ଗା ପ୍ରାପ୍ତି ଅର୍ଥାତ୍ ସଦ୍ୟ ମନ୍ଦାକିନୀ ପ୍ରାପ୍ତି ହେବାର ସମ୍ଭାବନା ।

କାଳିଦାସଙ୍କ ସମୟରେ ହିମାଳୟ ଅଞ୍ଚଳର ସୁନ୍ଦରୀମାନେ ମେଘକୁ ଖଡ଼୍‌ଗରେ ପ୍ରହାର ଦେଇ ସେଥିରୁ ପାଣି ବାହାର କରୁଥିଲେ ଓ ସେଥିପାଇଁ ସେମାନଙ୍କ ହାତରୁ ରକ୍ଷା ପାଇବା ପାଇଁ ବର୍ଷା ମାଉଁଆ ମେଘକୁ ଗର୍ଜନ କରିବାକୁ ପଡୁଥିଲା । ଆମେ ଯେଉଁ ରାସ୍ତାରେ ଯାଉଥିଲୁ ସେଠାରେ ଅଳ୍ପ ଉପରେ ଓ ରାସ୍ତା ତଳରେ ମଧ୍ୟ ମେଘ ଦେଖାଯାଏ ଯେପରି ମେଘ ପର୍ବତର ମେଖଳା । ସେଦିନ ମେଘ ଆମ ପାଖକୁ ଅପରାହ୍ଣରେ ଚଞ୍ଚଳ ଚାଲି ଆସିଲା ଓ ପ୍ରାୟ ଛଅଟା ସମୟରେ ବର୍ଷା ଆରମ୍ଭ ହେଲା ।

ସେ ଦିନ ସକାଳେ ଯାତ୍ରା ଆରମ୍ଭ କରିବା ବେଳେ ଆକାଶ ନିର୍ମଳ ଥିବାରୁ ମୁଁ ମୋର ଛତାଟି ଜଳଷପତ୍ର ଭିତରେ ଗୁଡ଼ାଇ କୁଲି ହାତରେ ଦେଇଥିଲି । ବର୍ଷା ଆରମ୍ଭ ହେବା ସମୟରେ ଆମକୁ ଗନ୍ତବ୍ୟ ସ୍ଥଳରେ ପହଞ୍ଚିବାକୁ ଅହୁରି ମାଇଲେ ଖଣ୍ଡେ ବାକିଥିଲା । ଆମେ ସମସ୍ତେ କ୍ଳାନ୍ତ ହୋଇ ପଡ଼ିଥିଲୁ । ମୁଁ ଘୋଡ଼ାରୁ ଓହ୍ଲାଇ ପଡ଼ି ଖଣ୍ଡେ ଚଦର ମୁଣ୍ଡରେ ଦେଇ ଚାଲିଲି । ବର୍ଷାର ବେଗ ଧୀରେ ଧୀରେ ବଢ଼ିଲା ଓ ମୁଁ ଗୌରୀକୁଣ୍ଡରେ ପହଞ୍ଚିଲା ବେଳେ ପୂରାପୂରି ତିନ୍ତି ଯାଇଥିଲି । ଛତାଟି ସଙ୍ଗରେ ନ ଆଣିବାର ନିର୍ବୋଧତା ବୁଝିବାକୁ ସେତେବେଳେ ଆଉ କିଛି ବାକି ନଥିଲା । ସେଦିନ ମୋର ସ୍ୱାସ୍ଥ୍ୟ ହାନି ଆଶଙ୍କା କରୁଥିଲି । ମାତ୍ର କିଛି ଅନିଷ୍ଟ ହେଲା ନାହିଁ । ଆମେ ରାତିରେ ଗୋଟିଏ ଚଟିରେ ରହିଲୁ ।

ତହିଁ ଆର ଦିନ ଷୋହଳ ତାରିଖ । ସେଦିନ ଗୌରୀକୁଣ୍ଡରୁ ସାତମାଇଲ ବାଟ କେଦାରନାଥକୁ ଯାଇ ସନ୍ଧ୍ୟା ସୁଦ୍ଧା ଫେରି ଆସିବାର ସ୍ଥିର ହେଲା । ଅନେକ ଯାତ୍ରୀ ଏପରି କରିଥାନ୍ତି । ସମୁଦ୍ର ପତ୍ତନ ଠାରୁ କେଦାରନାଥ ତୀର୍ଥର ଉଚ୍ଚତା ହେଉଛି ୧୧,୭୫୦ ଫୁଟ୍ । ସେଠାରେ ରାତିରେ ଏତେ ଶୀତ ହୁଏ ଯେ ରାତିରେ ଶୀତରେ ରହିବା ଯାତ୍ରୀମାନଙ୍କ ପକ୍ଷରେ କଷ୍ଟକର ହୁଏ । ଅନେକ ଯାତ୍ରୀ ଏଥିପାଇଁ କେଦାରନାଥକୁ ଯାଇ ସନ୍ଧ୍ୟା ସୁଦ୍ଧା ସେଠାରୁ ତିନମାଇଲ ଫେରି ଆସି ରାମ ବାରହା ନାମକ ଚଟିରେ ଆଶ୍ରୟ ନିଅନ୍ତି । ସେହି ଦିନ ପୁଣି ଗୌରୀକୁଣ୍ଡକୁ ଫେରିବାର ପ୍ରୋଗ୍ରାମ ଥିବାରୁ ଆମ ସଙ୍ଗରେ ଯାଇଥିବା କୁଲିକୁ ସେଦିନ ପୂର୍ଣ୍ଣ ବିଶ୍ରାମ ମିଳିଥିଲା ।

ଷୋହଳ ତାରିଖ ସକାଳ ପ୍ରାୟ ସାଢ଼େ ଛଅଘଣ୍ଟାରେ ଆମେ ଗୌରୀକୁଣ୍ଡରୁ କେଦାରନାଥ ଅଭିମୁଖେ ଯାତ୍ରା କଲୁ । ପୂର୍ବ ଦିନ ସତର ମାଇଲ ଯାତ୍ରାରେ ମୁଁ ଯେତେ କ୍ଳାନ୍ତ ହୋଇଥିଲି, ତହିଁରୁ ଅଧିକ କ୍ଳାନ୍ତ ହୋଇଥିଲା ମୋର ଦୁର୍ବଳ ଘୋଡ଼ା । ତେଣୁ ଏ ଦିନ ଦୁଇମାଇଲ୍ ନ ଯାଉଣୁ ଘୋଡ଼ାଟି ଆରମ୍ଭ କଲା ସତ୍ୟାଗ୍ରହ । ତେଣୁ ଘୋଡ଼ାରୁ ଓହ୍ଲାଇ ମଝିରେ ମଝିରେ ଚାଲିବାକୁ ପଡ଼ିଲା ।

କେଦାରନାଥ ଯାତ୍ରାର ଶେଷ ତିନମାଇଲରୁ ପ୍ରାୟ ଦୁଇମାଇଲରେ ପ୍ରାୟ ଦୁଇହଜାର ଫୁଟ୍ ଉପରକୁ ଉଠିବାକୁ ହୁଏ । ତେଣୁ ଯାତ୍ରାର

ଶେଷ ଅଂଶ ହେଉଛି ସବୁଠାରୁ କଠିନ । ସ୍ଥାନୀୟ ଲୋକମାନଙ୍କ କଥାରେ 'କେଦାର୍‌ନାଥ ଙ୍କ ଚଢ଼ାଇ' ଓ 'ଜର୍ମାନ୍ ଙ୍କ ଲଢ଼ାଇ' ସମାନ କଷ୍ଟକର । ବୈଜ୍ଞାନିକମାନଙ୍କ ମତରେ ଏତେ ଉଚ୍ଚତାରେ ବାୟୁମଣ୍ଡଳର ଘନତା ଅଳ୍ପଥିବା ଯୋଗୁଁ ଓ ବାୟୁରେ ଅମ୍ଳଜାନର ଅଳ୍ପତା ଯୋଗୁ ଅଧିକ କ୍ଳାନ୍ତ ଅନୁଭୂତ ହୁଏ । ଅଳ୍ପ ଦୂର ଗଲା ପରେ ନିଃଶ୍ୱାସ ନେବାରେ କଷ୍ଟ ହୁଏ । ଏହା ଛଡ଼ା ଅଧିକ ସମୟ ପାହାଡ଼ ଚଢିଲେ ବା ପାହାଚ ଚଢିଲେ ମଧ୍ୟ ହୃତପିଣ୍ଡର ଗତି ଚଞ୍ଚଳ ହେବାର ସ୍ପଷ୍ଟ ଅନୁଭବ ହୁଏ ।

ପୁଷ୍ଟିତତ୍ତ୍ୱ ବିଶାରଦମାନଙ୍କ ମତରେ ଆମର କାର୍ଯ୍ୟ ମଧ୍ୟରେ ଯେତେ ପରିମାଣରେ ଶରୀରରୁ ତାପ ବା କେଲରି (Calorie) କ୍ଷୟ ହୁଏ, ସେ ସବୁଥିରେ ପାହାଚ ଚଢିବାରେ ସବୁଠାରୁ ଅଧିକ କେଲରି କ୍ଷୟହୁଏ । ବ୍ୟାୟାମ କରିବା ଦୌଡ଼ିବା ବା ଘୋଡ଼ା ଚଢିବା ଠାରୁ ପର୍ବତ ଚଢିବାରେ ଅଧିକ ଦୈହିକ ଶକ୍ତି କ୍ଷୟ ହୁଏ । ପୁଣି ଯାହାର ଦେହର ଓଜନ ଯେତେ ଅଧିକ, ତା ଦେହରୁ ସେତିକି ଅଧିକ ଅନୁପାତରେ ତାପକ୍ଷୟ ହୁଏ ବୋଲି ବୈଜ୍ଞାନିକମାନେ କହନ୍ତି । ମୋର ଓଜନ ପ୍ରାୟ ଦୁଇମହଣ ଥିଲା । ପର୍ବତ ଉପରକୁ ଉଠିଲାବେଳେ ଦୁଇମହଣର ନିଜ ବୋଝ ଉଠାଇବା ଅଭିଶାପ ବୋଲି ବୋଧହୁଏ । ଆମର ମନରେ କିନ୍ତୁ ଗୋଟିଏ ଆଶ୍ୱାସନା ଥିଲା ଯେ ଯାତ୍ରା ଶେଷରେ ଦେହର ଓଜନ ଯଥେଷ୍ଟ କମିଯିବ ଓ ଶାରୀରିକ ସୁଷମତା ଅପେକ୍ଷିକ ଭାବରେ ଅଧିକ ହେବ ।

ମଝି ମଝିରେ ବିଶ୍ରାମ ନେଇ ସାତ ମାଇଲ ବାଟକୁ ଆମେ ସାଢ଼େ ପାଞ୍ଚ ଘଣ୍ଟାରେ ଗଲୁ । କେଦାରନାଥକୁ ପହଞ୍ଚିବାକୁ ଶେଷ ଏକ ମାଇଲ ବାଟ ଏକ ସମତଳ ପ୍ରାନ୍ତ ଓ ପ୍ରାୟ ସନ୍ତସନ୍ତିଆ ବିସ୍ତୀର୍ଣ୍ଣ ଉପତ୍ୟକା । ଏ ଅଞ୍ଚଳରେ ଆଉ ଗଛ ଲତା ନାହିଁ । ରାସ୍ତାରେ ବହୁଦୂରରୁ କେଦାରନାଥ ମନ୍ଦିର ଦେଖାଯାଏ ଓ ମନରେ ଗୋଟିଏ ସ୍ୱସ୍ତି ଆସେ ଯେ ଲକ୍ଷ୍ୟ ସ୍ଥଳ ଆଉ ଦୂର ନୁହେଁ ।

Courage, the journey is done
And the goal is attained,
Though a Few Furlongs more ere the
object is gained the reward of it all

ଆମେ ବାରଟାରେ କେଦାରନାଥରେ ପହଞ୍ଚି ମନ୍ଦାକିନୀରେ ସ୍ନାନ କଲୁଁ । ମନ୍ଦାକିନୀର ଉଦ୍‌ଗମ ସ୍ଥଳ ଏହିଠାରେ ଏକ ତୁଷାର ନଦୀରେ । ଏଠାରେ ପାଣି ବରଫ ପରି । ସ୍ନାନ କରିବାରେ ଖୁବ୍ କଷ୍ଟ ହୁଏ । କିନ୍ତୁ ଏ ପ୍ରକାର କ୍ଳାନ୍ତ ପରେ ସ୍ନାନ ଅବସାଦ ଦୂର କରେ ।

ଏଠାରେ ପଣ୍ଡାମାନଙ୍କ ସଙ୍ଗେ ପରିଚୟ ହେବା ପରେ କେଦାରନାଥ ମନ୍ଦିରକୁ ଦର୍ଶନ ପାଇଁ ଗଲୁ । ବନ୍ଧୁମାନଙ୍କ ମହିତ ମୁ ପୂଜାରେ ଯୋଗ ଦେଲି । କଥିତ ଅଛି ପୂର୍ବକାଳରେ ଶିବ ଭୀମଙ୍କ ଭୟରେ ମହିଷରୂପ ଧାରଣ କରି ପଳାୟନ କରିଥିଲେ ଓ ତାଙ୍କର ପଶ୍ଚାଦ୍-ଭାଗ କେଦାରେଶ୍ୱରଠାରେ, ନାଭି ମଧ୍ୟମେଶ୍ୱରରେ, ବାହୁ ତୁଙ୍ଗନାଥଠାରେ, ମୁଖ ରୁଦ୍ରନାଥରେ ଓ ଜଟା କଳ୍ପେଶ୍ୱରଠାରେ ଅବସ୍ଥିତ । ଏହି ପାଞ୍ଚଟି ଯାକ ସ୍ଥାନ ହେଉଛି ପଞ୍ଚକେଦାର ତୀର୍ଥ । କିନ୍ତୁ ପଞ୍ଚତୀର୍ଥ ଯାତ୍ରାରେ ପଞ୍ଚପ୍ରାଣର ସଙ୍କଟ ଆଶଙ୍କା କରି ଆମେ କେଦାରନାଥରୁ ଫେରିବା ସ୍ଥିର କଲୁ । ଅଧିକାଂଶ ଯାତ୍ରୀ ଏହାହିଁ କରିଥାନ୍ତି ।

କେଦାରନାଥ ମନ୍ଦିରରେ ମହିଷରୂପ ଶିବଙ୍କର ଶରୀରରେ ଘୃତଲେପନ କଲେ ଅଶେଷ ପୁଣ୍ୟ ହୁଏ ବୋଲି ପ୍ରବାଦ ଅଛି । ଦେବଦର୍ଶନ ଓ ଆରାଧନା ପରେ ମନ୍ଦିର ଦ୍ୱାରରେ ଜଣେ ସନ୍ନ୍ୟାସୀଙ୍କ ସଙ୍ଗେ ଦେଖା ହେଲା । ଅସହ୍ୟ ଶୀତ ଯୋଗୁଁ ଶୀତ ଦିନରେ ମନ୍ଦିରଦ୍ୱାର ବନ୍ଦ କରି ସବୁ ପୂଜାରୀ ଓ ଅନ୍ୟାନ୍ୟ ଗ୍ରାମବାସୀ ମଧ୍ୟ ଏଠାରୁ ୨୪ ମାଇଲ ଦୂରରେ ଥିବା ଉଖୀମଠକୁ ଚାଲିଯାଆନ୍ତି । ମାତ୍ର ଏ ବାବାଜି ବର୍ଷରେ ବାରମାସ ଏଠାରେ ରହନ୍ତି ।

ହିମାଳୟର ଉଚ୍ଚ ଶୃଙ୍ଗମାନ ଠିକ୍ କେଦାରନାଥ ମନ୍ଦିରର ପଛ ଆଡୁ ଆରମ୍ଭ ହୋଇଛି । ଏ ପର୍ବତ ଚୂଡ଼ାମାନଙ୍କରେ ଆମେ ବରଫର ମନୋହର ଦୃଶ୍ୟ ଦେଖିଲୁ । ପର୍ବତ ଶୃଙ୍ଗମାନଙ୍କ ଉପରେ ଶରତ୍‌କାଳର ଧବଳ ମେଘ ଏକ ତୁଳାର ପର୍ବତ ପରି ଦେଖା ଯାଉଥାଏ ଓ ପର୍ବତମାନ ସୂର୍ଯ୍ୟ କିରଣରେ ରୂପାର ପର୍ବତ ପରି ଦେଖା ଯାଉଥାଏ । ଏ ଦିନର ଏ ସୁନ୍ଦର ଦୃଶ୍ୟକୁ ମୁ ମୁଗ୍ଧ ହୋଇ ଚାହିଁଥାଏ ଅନେକ ବେଳଯାଏ । କାରଣ ଏପରି ସୁନ୍ଦର ଦୃଶ୍ୟ ମୁ ଏହା ପୂର୍ବରୁ କେବେ ଦେଖି ନଥିଲି । ଉଜ୍ଜ୍ୱଳ ସୂର୍ଯ୍ୟାଲୋକ ଓ ଛାୟାର ଇନ୍ଦ୍ରଜାଲରେ ଏ ଦୃଶ୍ୟ ପ୍ରତି ମିନିଟରେ

ପରିବର୍ତ୍ତିତ ହେଲା ପରି ଜଣା ପଡୁଥାଏ । ଏବେ ଯେଉଁଠି ତୁଷାରର ଘନସ୍ତର ଉଜ୍ଜ୍ୱଳ ଗୌରବର୍ଣ୍ଣ ଦେଖାଯାଉଛି, ପୁଣି କିଛି ସମୟ ପରେ ତାହା କଳା ପଥର ପରି ଦେଖାଯାଏ , ପୁଣି କିଛି ସମୟ ପରେ ତାହା ରୂପା ପରି ଆଖି ଝଲସାଇ ଦିଏ । କବିମାନେ କୈଳାଶ ପର୍ବତକୁ ରୂପାର ତିଆରି ହୋଇ ଥିବାର କଳ୍ପନା କରିଥିଲେ । ଏଠାରେ ମଧ୍ୟ ହିମାଳୟର ଶୃଙ୍ଗ ରୂପାରେ ତିଆରି ହେବା ପରି ଜଣା ପଡୁଥିଲା । ଏଠାରେ ଧଳା ଓ କଳା ରଙ୍ଗର ଲୁଚକାଳି ଖେଳ ଚାଲୁଥାଏ । ତାହାଁ ଉପରେ ଧବଳ ମେଘମାଳା ଓ ତାହାଁ ଉପରେ ଘନନୀଳ ଆକାଶ । ଏହା ହେଲା କେଦାରନାଥ ମନ୍ଦିରର ପୃଷ୍ଠଭୂମି 'ଏହା ଦେଖି ଦେଖି ମୋର ଏତେ ପରିଶ୍ରମ ସାର୍ଥକ ହେଲା ପରି ମନେ ହେଲା । କିନ୍ତୁ କିଛି ସମୟ ପରେ ଏ ଦୃଶ୍ୟ ଉଜ୍ଜ୍ୱଳ ବରଫ କୁହୁଡ଼ିର ଯବନିକାର ଅନ୍ତରାଳରେ ଲୁଚିଗଲା । ପୁଣି କିଛି ସମୟ ପରେ ବର୍ଷା ହେଲା । ପୁଣି କେତେ ମିନିଟ୍ ପରେ ସୂର୍ଯ୍ୟକରୋଜ୍ଜ୍ୱଳ ସୁନୀଳ ଆକାଶ ତଳେ ସଦ୍ୟସ୍ନାତ ହିମାଳୟର ସ୍ନିଗ୍ଧ ଶୁଭ୍ରତା । ଦେବତା ଦର୍ଶନ ପରେ ଦେବତାତ୍ମା ହିମାଳୟର ଦର୍ଶନରେ ମୁଁ ଏ ଦିନ ମୁଗ୍ଧ ହୋଇଥିଲି ।

ଏଠାରେ ମଧ୍ୟାହ୍ନ ଭୋଜନ ପରେ ସାମାନ୍ୟ ବିଶ୍ରାମ କଲା ସମୟରେ ପଣ୍ଡାଙ୍କର ପ୍ରଶ୍ନରେ ନିଜର ବଂଶ ବିବରଣୀ ପୁଣି ଦେବାକୁ ହେଲା । କକେଇ ପୁଅ ନାତିମାନଙ୍କର ନାମ ସ୍ମରଣ କରିବାରେ ନିଜ ଅକ୍ଷମତାରେ ମୁଁ ଲଜ୍ଜିତ ହେଲି । ଏତେ ପରିଶ୍ରମ କରି ଶାରୀରିକ ଯୌବନର କିଛି ଅଂଶ ଫେରି ପାଇଥିଲେ ସୁଦ୍ଧା ସ୍ମରଣ ଶକ୍ତିର ଅଭାବ ଯୋଗୁଁ ମାନସିକ ଜରାର ଶୀତଳ ସ୍ପର୍ଶ ଲାଭ କରିଥିଲି କି ? ଅଥବା ହିମାଳୟର ହିମ ସ୍ପର୍ଶ ମୋତେ ବାସ୍ତବ ଜଗତରୁ ଏତେ ଉଚ୍ଚକୁ ଟେକି ନେଇଥିଲା, ଯେଉଁଠାରେ ନିଜର ପ୍ରିୟ କୁଟୁମ୍ବ ଲୋକଙ୍କୁ ମଧ୍ୟ ଚିହ୍ନିବା ଟିକିଏ କଷ୍ଟକର ହୋଇପଡ଼େ ।

ପ୍ରାୟ ଦୁଇଟା ବେଳେ ପଣ୍ଡାଙ୍କଠାରୁ ବିଦାୟ ନେଇ ଗୌରୀକୁଣ୍ଡକୁ ଫେରିବାକୁ ବାହାରିଲୁ । ମୋର ଘୋଡ଼ା ସେଠାରୁ ପେଟ୍ରୋଲ୍ ସନ ଯାଇଥିବାର ଉପଲବ୍ଧି କରି ପଦବ୍ରଜରେ ଫେରିବାର ସ୍ଥିର କଲି । ମୋର ଧାରଣା ଥିଲା ପର୍ବତ ଉପରକୁ ଯିବା ସିନା କଷ୍ଟକର, ଓହ୍ଲାଇ ଆସିବାରେ କିଛି କଷ୍ଟ ନଥିବ । ଏହା ଭାବି ଶୀଘ୍ର ଶୀଘ୍ର ଚାଲିବାକୁ ଲାଗିଲି

ଭଳି ଗ୍ଲେମାଇଲ ପରେ ପୁଣି ଖୁଷଣ ବୃଷ୍ଟି ହେଲା ଓ ଛତାଟାଣି ଚ୍ଲିବାକୁ ପଡ଼ିଲା । କିନ୍ତୁ ଆଉ ପ୍ରାୟ ମାଇଲେ ବାଟ ଗଲାପରେ ଜଣା ପଡ଼ିଲା ଯେ ମୋର ଦୁଇ ଆଣ୍ଠୁରେ ଖୁଷଣ ଦରଦ ହେଉଛି । କିନ୍ତୁ ବର୍ଷାରେ ଜଙ୍ଗଲ ରାସ୍ତାରେ ଚ୍ଲିବା ଛଡ଼ା ଆଉ ଅନ୍ୟ ଉପାୟ ନ ଥିଲା । କେଉଁଠି ଠିଆ ହୋଇ ରହିଲେ ଗୋଡ଼ ଦୁଇଟା ସ୍ଥିର ନ ରହି କମ୍ପିଲା । କୌଣସିଠାରେ ବସିବାର ବା ବିଶ୍ରାମ ନେବାର ଉପାୟ ନାହିଁ । ବହୁ କଷ୍ଟରେ ଆମେ ପ୍ରାୟ ଛଅଟା ବେଳକୁ ଗୌରୀକୁଣ୍ଡକୁ ପହଞ୍ଚିଲୁଁ । ସେତେବେଳେ ପାହାଡ ଚଢ଼ିବାରେ ଆଉ ଓହ୍ଲାଇବାରେ ଗୋଡ଼ ଦୁଇଟିରେ ମୋଟେ ଶକ୍ତି ନାହିଁ କହିଲେ ଚଳେ । ସେ ଦିନର ଅଭିଜ୍ଞତାରୁ ମୁଁ ବୁଝିଲି ଯେ ପର୍ବତ ଉପରକୁ ଚଢ଼ିବା ଯେତେ କଠିନ ପର୍ବତରୁ ଓହ୍ଲାଇବା ତହିଁରୁ କମ୍ କଠିନ ନୁହେ । ଚଢ଼ିବାରେ ଛାତିରେ ବେଶୀ ଚାପ ପଡ଼େ, ଓହ୍ଲାଇ ଆସିବାରେ ସାରା ଶରୀରର ଭାର ଆଣ୍ଠୁ ଦୁଇଟି ଉପରେ ପଡ଼େ । ଅବଶ୍ୟ ପର୍ବତ ରାସ୍ତାରେ ଯିବା ଆସିବା ପାଇଁ ଲାଠି ବିଶେଷ ସାହାଯ୍ୟ କରେ । କିନ୍ତୁ କେଦାରନାଥ ଯାତ୍ରାରେ ଆମେ ହାତରେ ଲାଠି ନେଇ ନ ଥିଲୁଁ । କାରଣ ଆମର ଧାରଣା ଥିଲା ଯେ ଆମେ ଯାତ୍ରାର ମୂଳରୁ ଶେଷ ପର୍ଯ୍ୟନ୍ତ ଘୋଡ଼ାରେ ଯିବୁ ।

କେଦାରନାଥରୁ ଗୌରୀକୁଣ୍ଡକୁ ଫେରିଲାବେଳେ ବର୍ଷା ଯୋଗୁଁ କାଦୁଅରେ ଶ୍ରୀ ପଟ୍ଟନାୟକଙ୍କର ଘୋଡ଼ାର ଗୋଡ଼ ଖସିଗଲା ଓ ଘୋଡ଼ା ପଡ଼ିଗଲାବେଳେ ଶ୍ରୀ ପଟ୍ଟନାୟକ କୌଶଳକ୍ରମେ ଘୋଡ଼ାରୁ ଡେଇଁ ପଡ଼ି ନିଜକୁ ସମ୍ଭାଳି ନେଲେ । ଶ୍ରୀ ଚନ୍ଦ୍ରମଣି କାନୁନଗୋଙ୍କ ଘୋଡ଼ା ବରାବର ନଦୀର ଅତି ନିକଟ ଧାରରେ ଯାଉଥିବାରୁ ସେ ସେହିପରି ଘୋଡ଼ାର ଗୋଡ଼ ଖସିଗଲେ ଖୁଷଣ ବିପଦର ଆଶଙ୍କା କରି ପାଦରେ ଚ୍ଲିବାକୁ ସ୍ଥିର କଲେ । ବାସ୍ତବିକ ଏ ଅଞ୍ଚଳରେ ଅଶ୍ୱାରୋହଣର ସୁବିଧା ଠାରୁ ବିପଦ ଅଧିକ ଗୁରୁତର ଓ ମାରାତ୍ମକ ହେବାର ସମ୍ଭାବନା ଅଛି ।

ଗୌରୀକୁଣ୍ଡରେ ରାତିଟା ରହି ସକାଳ ଆଠଟା ସକାଳେ ଆମେ ଗୌରୀକୁଣ୍ଡରେ ସ୍ନାନ କରିବାକୁ ଗଲୁ । ମନ୍ଦାକିନୀ ନଦୀ ତୀରରେ ଏହି କୁଣ୍ଡ । ଏହି କୁଣ୍ଡର ପାଣି ଖୁବ୍ ଗରମ । ଏତେ ଗରମ ପାଣି ଭିତରେ ପଶି ସ୍ନାନ କରିବାକୁ ଭୟ ହୁଏ । ତେଣୁ ଲୋକମାନେ ପାଣି ଆଣି

ଗାଧୋଇଲୁ । ଏ ପ୍ରକାର ଉଚ୍ଚ ଓ ଶୀତ ସ୍ଥାନରେ ଏ ପ୍ରକାର ତପ୍ତକୁଣ୍ଡ ହିମାଳୟର ଆଉ ଏକ ପ୍ରହେଳିକା ।

ଯମୁନୋତ୍ରୀଠାରେ ମଧ୍ୟ ଏହି ପରି ଗୋଟିଏ ତପ୍ତକୁଣ୍ଡ ଅଛି ବୋଲି ଶୁଣିଲୁ । ସେଠାରେ ପାଣି ଫୁଟନ୍ତ ପ୍ରାୟ । ଏତେ ଗରମ ପାଣି ଭିତରେ କନାରେ ଚାଉଳ, ଡାଲି ଓ ଆଳୁ ଆଦି ଗୁଡ଼ାଇ ଛାଡ଼ି ଦେଲେ ଅଳ୍ପ ସମୟ ମଧ୍ୟରେ ସେ ସବୁ ଖାଇବା ଉପଯୁକ୍ତ ହୋଇଯାଏ ।

ତପ୍ତକୁଣ୍ଡରେ ସ୍ନାନ କରି ବେଶ୍ ଆରାମ ଲାଗିଲା ।

ଏ ଦିନର ସନ୍ଧ୍ୟା ସୁଦ୍ଧା ଆମକୁ ଗୁପ୍ତକାଶୀକୁ ଫେରିବାର ଥିଲା । ତେଣୁ ଆମେ ଏ ରାସ୍ତାରୁ କିଛି ଅନ୍ୟ ବାଟରେ ଥିବା ତ୍ରିଯୁଗୀନାରାୟଣ ନାମକ ଆଉ ଏକ ତୀର୍ଥସ୍ଥାନକୁ ଯାଇ ପାରିଲୁନାହିଁ । ମାତର ଚାରିଟା ସକାଳ ପ୍ରାୟ ଆମେ ଠାରେ ଗୌରୀକୁଣ୍ଡରୁ ବାହାରି ସନ୍ଧ୍ୟା ଛଅଟା ସୁଦ୍ଧା ଆମେ ଗୁପ୍ତକାଶୀରେ ପହଞ୍ଚିଲୁ । ଏ ରାସ୍ତାର ଅଧିକାଂଶ ଲୋକେ ଚାଲିଆସିବାକୁ ପଡ଼ିଥିଲା । କହିବା ବାହୁଲ୍ୟ, ଗୌରୀକୁଣ୍ଡ ଓ ଗୁପ୍ତକାଶୀ ମଧ୍ୟରେ ରାସ୍ତା ବରାବର ଉଚ୍ଚନୀଚ ଥିବାରୁ ଯିବା ଆସିବା ଉଭୟ ପ୍ରାୟ ସମାନ କଷ୍ଟକର ।

ଗୁପ୍ତକାଶୀରେ ପହଞ୍ଚି ଆମେ ଏକ ବିଚିତ୍ର ଅଭିଜ୍ଞତା ଲାଭ କଲୁ । ଯେଉଁ ପଣ୍ଡାମାନେ ଆମକୁ ପୂର୍ବରୁ ଏତେ ସହୃଦୟତା ଦେଖାଇଥିଲେ, ଏବେ ସେହିମାନେ ଆଉ ଦେଖା ସୁଦ୍ଧା ଦେଲେ ନାହିଁ । ଫେରିବା ପାଇଁ ବ୍ୟବସ୍ଥା କରିବାକୁ ବାସ ଆଦି ଯୋଗାଡ଼ କରିବାରେ ମଧ୍ୟ ସାହାଯ୍ୟ କଲେ ନାହିଁ, ବାରମ୍ବାର ସେମାନଙ୍କ ପାଖକୁ ଖବର ପଠାଇଲା ପରେ ମଧ୍ୟ । ଏଥିରେ କାରଣ ବୋଧହୁଏ:—

"ଆରମ୍ଭ ଗୁର୍ବୀ କ୍ଷୟିଣୀ କ୍ରମେଣ
ଲଘ୍ୱୀ ପୁରା ବୃଦ୍ଧିମତୀ ଚ ପଶ୍ଚାତ୍
ଦିନସ୍ୟ ପୂର୍ବାର୍ଦ୍ଧ ପରାର୍ଦ୍ଧ ଭିନ୍ନା
ଛାୟେବ ମୈତ୍ରୀ ଖଳ ସଜ୍ଜନାନାମ୍ ।

ଏହି ମତ ସେମାନେ ଅବଲମ୍ବନ କଲେ ବୋଲି ଆମେ ଅନୁମାନ କଲୁ ।

ଏହାର ଅନ୍ୟ ଗୋଟିଏ କାରଣ ମଧ୍ୟ ଥାଇପାରେ । ନେପାଳର ରାଜମାତା ତିନିଦିନ ଗୁପ୍ତକାଶୀରେ ଅବସ୍ଥାନ କରି, ସେହିଦିନ ସକାଳେ କେଦାରନାଥ ଅଭିମୁଖେ ଯାତ୍ରା କରିଥିଲେ । ରାଜମାତାଙ୍କର ଗୁପ୍ତକାଶୀରେ ଅବସ୍ଥାନ କାଳରେ ବ୍ରାହ୍ମଣ ଓ ପଣ୍ଡାମାନେ ପ୍ରଚୁର ଦାନ ଦକ୍ଷିଣା ପାଇଥିଲେ । ତେଣୁ ଏତେ ଲାଭ ପରେ ଆମ ଭଳିଆ ମଳମୁଣ୍ଡିଆଙ୍କୁ ସେମାନେ ନ ପଚାରିବା ସ୍ୱାଭାବିକ; କାରଣ:—

ଅପ୍ରାଂ ହି ନୃମ୍ୟାପୁ ନ ବାଞ୍ଛାରି
ସ୍ୱାଦୁ ସୁଗନ୍ଧ ସୁଜଳଂ ତୃଷାରି ।

ସେ ଦିନ ରାତିରେ ଗୁପ୍ତକାଶୀରେ ରହି ତହିଁ ଆରଦିନ ପୂର୍ବ-କଥିତ ବସ୍‌ଷ୍ଟାଣ୍ଡ 'କୁଣ୍ଡ'କୁ ଫେରିଲୁ । କିନ୍ତୁ ଆମେ ବସ ଷ୍ଟାଣ୍ଡକୁ ପହଞ୍ଚିବାର ଠିକ୍ ଦଶ ମିନିଟ୍ ପୂର୍ବରୁ ରୁଦ୍ରପ୍ରୟାଗକୁ ଯାଉଥିବା ବସ୍ ଛାଡ଼ି ଦେଇଥିଲା । ତେଣୁ ବସ୍ ପାଇଁ ସେଠାରେ ଆମକୁ ପ୍ରାୟ ତିନିଘଣ୍ଟା ଅପେକ୍ଷା କରିବାକୁ ପଡ଼ିଥିଲା । ରୁଦ୍ର ପ୍ରୟାଗ ପହଞ୍ଚିଲା ବେଳକୁ ସମୟ ପ୍ରାୟ ଏଗାରଟା ହୋଇ ଯାଇଥିଲା । ସେ ଦିନ ସନ୍ଧ୍ୟା ସୁଦ୍ଧା ଆମକୁ ରୁଦ୍ର ପ୍ରୟାଗଠାରୁ ବସ୍‌ରେ ଯାଇ ପଚିଶ ମାଇଲ ଦୂରବର୍ତ୍ତୀ ପିପଲକୋଟିରେ ପହଞ୍ଚିବାର ପ୍ରୋଗ୍ରାମ ଥିଲା । କିନ୍ତୁ ସୁବିଧାରେ ବସ୍ ମିଳିଲା ନାହିଁ । ଅଧବାଟରେ କୌଣସି ଚଟିରେ ରହି କିଛି ଲାଭ ନାହିଁ । ସେଥିପାଇଁ ସେଦିନ ରୁଦ୍ର ପ୍ରୟାଗରେ ରହିବାକୁ ବାଧ୍ୟ ହେଲୁ । ଆମର ମନେ ହେଲା "ଈଶ୍ୱର ଯାହାକରନ୍ତି, ପ୍ରାଣୀର ମଙ୍ଗଳ ପାଇଁ । ଆମକୁ ଦିନେ ବାଧ୍ୟତା-ମୂଳକ ବିଶ୍ରାମ ମିଳିଲା ।


Digitized by srujanika@gmail.com

# ହିମାଳୟର ଆକର୍ଷଣ

( ଦ୍ୱିତୀୟ ପର୍ଯ୍ୟାୟ )

ପୂର୍ବରୁ କୁହାଯାଇଛି, ରୁଦ୍ରପ୍ରୟାଗଠାରୁ ଗୋଟିଏ ରାସ୍ତା କେଦାରନାଥ ଓ ଆଉ ଗୋଟିଏ ରାସ୍ତା ବଦ୍ରୀନାଥ ପର୍ଯ୍ୟନ୍ତ ଯାଇଛି। ରୁଦ୍ରପ୍ରୟାଗରେ ସେ ଦିନ ବିଶ୍ରାମ ମିଳିବାରୁ କିଛି ବଜାର ସଉଦା କରାଗଲା। କେଦାରନାଥ ଯାତ୍ରାବେଳେ ବାଡ଼ି ଅଭାବରୁ ଆମକୁ କଷ୍ଟ ହୋଇଥିଲା ବୋଲି ମୁଁ ବନ୍ଧୁମାନଙ୍କ ଆଗରେ ପ୍ରସ୍ତାବ କଲି "ଯୁନି ସେ ଏକ୍ ଏକ୍ ଲଠୀ ଲେ ଲେଁ।" ଏ ପ୍ରସ୍ତାବରେ ମୋର ମରହଟି ବନ୍ଧୁମାନେ ହସିଲେ। ମୁଁ 'ତହିଁର କାରଣ ପଚାରିବାରୁ ଶ୍ରୀ ପଟିଲ କହିଲେ, "ମରାଠୀ ଭାଷାରେ 'ଲଠ୍ଠୀ' ଶବ୍ଦର ଅର୍ଥ ହେଉଛି 'ମୋଟୀ ସ୍ତ୍ରୀ ଲୋକ'। ସେଥିପାଇଁ ଆମେ ହସିଲୁ।" ମୁଁ କହିଲି, "ଭଲ କଥା। ଆମ ପାଖରେ ତ ପତଳା ଛତା ଅଛି। ଆଉ ମୋଟୀ 'ଲଠ୍ଠୀ'ବି କିଣା ଯାଉଛି। ଥକା ଲାଗିଲେ କେତେବେଳେ 'ପତଳା ଛଡ଼ି'ର କାନ୍ଧରେ ଭରା ଦେଇ, କେତେବେଳେ 'ମୋଟୀ ଲଠ୍ଠୀ'ର କାନ୍ଧରେ ଭରା ଦେଇ ଚାଲିଲେ ବେଶ୍ ମଜା ଲାଗିବ।" ବାସ୍ତବିକ ସାତଦିନର ସାହଚର୍ଯ୍ୟ ପରେ ବଦ୍ରୀନାଥ ଯାତ୍ରା ଶେଷରେ ଏହି ନୀରସ ଲଠିମାନଙ୍କରେ ମଧ୍ୟ ଆମର ପ୍ରେମସଞ୍ଚାର ହୋଇଥିଲା। ଯେଉଁ ଦେଶରେ ନାରୀ ଓ ପୁରୁଷ ମଧ୍ୟରେ ଅଗ୍ନି ସମ୍ମୁଖରେ ଏକ ସାଙ୍ଗରେ ସାତପାଦ ଚାଲିଲା ପରେ ବନ୍ଧନ ଆଜୀବନ ଅଚ୍ଛେଦ୍ୟ ହୋଇଯାଏ, ସେ ଦେଶରେ ତୀର୍ଥ ପଥରେ ଛଅଶହ ମାଇଲ ଏକା ସାଙ୍ଗରେ ଚାଲିଲା ପରେ ଲାଠୀ ଓ ଏମ୍: ପି ମଧ୍ୟରେ ବନ୍ଧନ ନିବିଡ଼ ହେବାର ବିଚିତ୍ର ନୁହେ।

ସେ ଦିନଟା ଥିଲା ରବିବାର। ବିଶ୍ରାମ ପାଇଁ ବିଶେଷ ଉପଯୁକ୍ତ। ରୁଦ୍ରପ୍ରୟାଗରେ ଗୋଟିଏ ଏକ ବିଶ୍ରାମଗୃହ ଅଛି ବଦ୍ରୀନାଥ ଟ୍ରଷ୍ଟକମିଟି


Digitized by srujanika@gmail.com

ପକ୍ଷରୁ । ଆମେ ଯାଇ ସେଥିରୁ ଗୋଟିଏ କୋଠରୀ ଦଖଲ କଲୁ । ବହୁଦିନର କଠୋର ପରିଶ୍ରମ ପରେ ଦିନେ ରାତିରେ ସ୍ୱପ୍ନହୀନ ସୁଷୁପ୍ତି ଉପଭୋଗ କରିବାର ଆଶା କରୁଥିଲୁ । କିନ୍ତୁ ହାୟ, ମନୁଷ୍ୟ ଭାବେ ଗୋଟିଏ ପ୍ରକାର କିନ୍ତୁ ନିୟତି ବିଧାନ କରେ ଅନ୍ୟ ପ୍ରକାର । ଦିନଯାକ ଅଳସ ଭାବେ ବୁଲାବୁଲି କରି ରାତିରେ ଖାଇସାରି ଶୋଇବାକୁ ଗଲୁ । କିନ୍ତୁ ସାଢ଼େ ଏଗାରଟା ପୂର୍ବରୁ ଆମ ଗୃହଜନଙ୍କର ନିଦ ଅସଂଖ୍ୟ ଓଡ଼ଶମାନଙ୍କର ଆକ୍ରମଣରେ ବ୍ୟାହତ ହେଲା । ଏଠାର ଓଡ଼ଶମାନେ ମେରାମଣ୍ଡଳୀ ଷ୍ଟେସନ୍ ୱେଟିଙ୍ଗ୍ ରୁମ୍‌ର ଓଡ଼ଶ ବା ଭୁବନେଶ୍ୱରର ଓଡ଼ଶମାନଙ୍କ ଅପେକ୍ଷା ଅଧିକ ବୁଦ୍ଧିମାନ୍, କଷ୍ଟସହିଷ୍ଣୁ ଓ ଶୋଷକ । ଭୁବନେଶ୍ୱର ବା ମେରାମଣ୍ଡଳୀଠାରେ ଭୂଇଁରେ ଶୋଇଲେ ଓଡ଼ଶମାନଙ୍କୁ ସହଜରେ ଫାଙ୍କି ଦିଆଯାଇପାରେ । ସେଠାରେ ଓଡ଼ଶମାନେ ବିଛଣା ବା ଚେଅର୍ ଛାଡ଼ି ଭୂଇଁକୁ ଆସିବାରେ ନିଜର ଆତ୍ମସମ୍ମାନରେ ହାନି ହେବାର ଅନୁଭବ କରନ୍ତି ବୋଧହୁଏ । କିନ୍ତୁ ରୁଦ୍ରପ୍ରୟାଗରେ ତାହା ନାହିଁ । ଏଠାରେ ସେମାନେ ଯୁବରାଜ ଅଶୋକଙ୍କ ପରି ଭୂମିକୁ ଖଟ ବା ଆସନଠାରୁ ଅଧିକ ଗୌରବମୟ ମନେ କରନ୍ତି । କାନ୍ଥ ସନ୍ଧିରେ ସେମାନଙ୍କର ଦୁର୍ଗ । ଭୂମିଶାୟୀମାନଙ୍କର ରକ୍ତପ୍ରତି ସେମାନଙ୍କର କୌଣସି ତାଚ୍ଛଲ୍ୟ ବା ଉପେକ୍ଷା ନାହିଁ ।

ଆମେ ଏଗାରଟାରୁ ଚାରିଟା ପର୍ଯ୍ୟନ୍ତ ଉନିଦ୍ରାଭାବରେ ବସି ରହିଲୁ । ମୁଁ ବନ୍ଧୁମାନଙ୍କୁ ସାନ୍ତ୍ୱନା ଦେଲି ଯେ ଅନ୍ତତଃ କେତେ ତୀର୍ଥଯାତ୍ରୀ ଆମକୁ ମିଳିଗଲେ ଓ ଆମେ ସେମାନଙ୍କୁ ନିଜ ନିଜ ବିଛଣାରେ ଧରି ବଦ୍ରୀନାଥ ଧାମ ପର୍ଯ୍ୟନ୍ତ ପହଞ୍ଚାଇ ଦେଇ ଅଶେଷ ପୁଣ୍ୟ ଅର୍ଜନ କରିବା । କିନ୍ତୁ ମୋର ସେ ଧାରଣା ଭୁଲ୍ ବୋଲି ତହିଁ ଆର ଦିନ ରାତିରେ ଜଣା ପଡ଼ିଲା କାରଣ ସେ ରାତିରେ ଶୋଇଲା ବେଳେ ଆମ ବିଛଣାରେ ଗୋଟିଏ ସୁଦ୍ଧା ଓଡ଼ଶ ନ ଥିଲେ । ଏଥିରୁ ସ୍ପଷ୍ଟ ଜଣାଗଲା ଯେ ଏଠାର ବୁଦ୍ଧିମାନ ଓଡ଼ଶମାନେ ନିଜ ନିଜ ପାଥେୟ ସଂଗ୍ରହ କରି ନିଜ ସ୍ଥାନକୁ ରାତି ଶେଷ ହେବା ପୂର୍ବରୁ ଫେରି ଯାଇଥିଲେ । ବିନା ଟିକଟ୍‌ରେ ଭ୍ରମଣ କରିବା ବା ତୀର୍ଥଯାତ୍ରାର ପୁଣ୍ୟ ସଞ୍ଚୟ କରିବା ପାଇଁ ସେମାନଙ୍କର ସ୍ପୃହା ନ ଥିଲା ।

ଟ୍ରେନ୍‌ର ପାଞ୍ଚଟା ବେଳେ ବସ୍ । ଆମେ ରାତ୍ରରେ ଶୋଇ ପାରି ନଥିବା ଯୋଗୁ ସାଢ଼େ ଚାରିଟା ପୂର୍ବରୁ ବସ୍‌ରେ ନିଜ ନିଜ ଆସନ ଦଖଲ କରି ଯାଇଥିଲୁ । ବ୍ରାହ୍ମମୁହୂର୍ତ୍ତରେ ଶୌଚାଦିଯୋଗ ପାଇଁ ଏଲାର୍ମ ଘଡ଼ିଠାରୁ ଓଡ଼ିଆମାନେ ଅଧିକ ସଚେତନ ।

ରୁଦ୍ରପ୍ରୟାଗ ଠାରୁ ବଦ୍ରିନାଥ ୮୮ ମାଇଲ । ସେଥିରୁ ୫୦ ମାଇଲ ପିପଲକୋଠି ପର୍ଯ୍ୟନ୍ତ ଆମକୁ ବସ୍‌ରେ ଯିବାକୁ ପଡ଼ିଥିଲା ଓ ସେଠାରୁ ୩୮ ମାଇଲ ବାଟ ଚାଲିବାର କଥା । କିନ୍ତୁ ଯେଉଁମାନେ ବୈଶାଖ ବା ଜ୍ୟେଷ୍ଠ ମାସରେ ବଦ୍ରୀନାଥ ଯାଆନ୍ତି ସେମାନେ ପିପଲକୋଠିରୁ ଯୋଶୀମଠ ପର୍ଯ୍ୟନ୍ତ ବସ୍‌ରେ ଯାଆନ୍ତି । ସେମାନଙ୍କୁ କେବଳ ୧୯ ମାଇଲ ବାଟ ଚାଲିବାକୁ ପଡ଼େ, ଯୋଶୀମଠ ଠାରୁ ବଦ୍ରୀନାଥ ଧାମ ପର୍ଯ୍ୟନ୍ତ । ବର୍ଷା ଆରମ୍ଭ ହେଲେ ରାସ୍ତାରେ ପଥର ଅନ୍ଧ ପଡ଼ି ଖରାପ ହୋଇଯାଏ ବୋଲି ପିପଲକୋଠିରୁ ଯୋଶୀମଠ ପର୍ଯ୍ୟନ୍ତ ବର୍ଷା ଦିନେ ବସ୍ ଯାଏ ନାହିଁ । ଆମର ଯାତ୍ରା ପରେ ରାଷ୍ଟ୍ରପତି ଅକ୍ଟୋବର ୧ ତାରିଖରୁ ୪ ତାରିଖ ଭିତରେ ବଦ୍ରୀନାଥ ଯିବାର ଥିଲା । ତେଣୁ ଆମେ ଆଶା କରିଥିଲୁ ବର୍ଷାକାଳ ପ୍ରାୟ ଶେଷ ହୋଇଯାଇ ଥିବାରୁ ସେପ୍ଟେମ୍ବର ୧୫ ତାରିଖ ଅଡ଼କୁ ଯୋଶୀମଠ ପର୍ଯ୍ୟନ୍ତ ବସ୍ ଚାଲିବ । କିନ୍ତୁ ଆମେ ଗଲାବେଳେ କେବଳ ପିପଲକୋଠି ପର୍ଯ୍ୟନ୍ତ ବସ୍ ଚାଲୁଥିଲା ।

ରୁଦ୍ରପ୍ରୟାଗଠାରୁ ପିପଲକୋଠି ପର୍ଯ୍ୟନ୍ତ ରାସ୍ତାରେ ହିମାଳୟର ଦୃଶ୍ୟ ବଡ଼ ସୁନ୍ଦର । ଏ ଅଞ୍ଚଳରେ ପର୍ବତ ଉପରେ ଅନେକ ଗାଁ ଅଛି ଓ ପର୍ବତରେ ହାଡ଼ ଦେଇ ଅନେକ ସ୍ଥାନରେ ଚାଷ ହେଉଛି । ଏ ଦୁଇ ସ୍ଥାନ ମଧ୍ୟରେ କର୍ଣ୍ଣପ୍ରୟାଗ ଓ ନନ୍ଦପ୍ରୟାଗ ଦୁଇଟି ତୀର୍ଥସ୍ଥଳ । କର୍ଣ୍ଣ ପ୍ରୟାଗଠାରେ ପିଣ୍ଡାର ଗଙ୍ଗାନଦୀ ଅଲକନନ୍ଦାରେ ଆସି ମିଶିଛି ଓ ସଙ୍ଗମ ପାଖରେ ନଦୀରେ ପୋଲ ଥିବା ଯୋଗୁ ରାସ୍ତା ଦୁଇପାଖରେ ଖୁବ୍ ତଳକୁ ଓହ୍ଲାଇ ଯାଇ ପୁଣି ଅନ୍ୟଆଡ଼େ ଉଠି ଯାଇଛି । ନଦୀ ପାଖକୁ ରାସ୍ତା ଯେତେବେଳେ ଓହ୍ଲାଇଯାଏ ସେତେବେଳେ ଦୃଶ୍ୟ ବଡ଼ ସୁନ୍ଦର ଦେଖାଯାଏ ।

ନନ୍ଦପ୍ରୟାଗଠାରେ ନନ୍ଦରାଜା ଦୁଧ ଓ ଦହିରେ ପିଣ୍ଡଦାନ କରିଥିଲେ ବୋଲି ଜନଶ୍ରୁତି ଅଛି । ବାସ୍ତବରେ ଏଠାରେ ଖୁବ୍ ଉପରୁ

ବସ୍ତାରୁ ଦେଖିଲେ ହଜାରେ ଫୁଟ୍ ତଳେ ବହିଯାଉଥିବା ଫେନ ବହୁଳ ନିର୍ଝରମାନ ଦୁଧର ନଦୀ ପରି ଦେଖାଯାଏ । ଏଠାରେ ନନ୍ଦାକିନୀ ନଦୀ ଆସି ଅଲକନନ୍ଦାରେ ମିଶିଛି ।

ତାପରେ ଦର୍ଶନୀୟ ସ୍ଥାନ ହେଉଛି ଚମୋଲି । ପୂର୍ବେ ଏହି ସବୁ ଅଞ୍ଚଳ ଗଡ଼ୱାଲ୍ ଜିଲ୍ଲାର ଅନ୍ତର୍ଭୁକ୍ତ ଥିଲା । କିନ୍ତୁ ଚୀନ ଓ ଭାରତର ସୀମା ବିବାଦ ନେଇ ୧୯୬୮ ସାଲରେ ଚୀନ ପକ୍ଷରୁ ଭାରତ ଉପରେ ଆକ୍ରମଣ ହେବା ଫଳରେ ଏହି ସୀମାନ୍ତ ଅଞ୍ଚଳରେ ଏକ ନୂଆ ଜିଲ୍ଲା ଗଢ଼ାଯାଇଛି । ଏହାର ନାମ ଚମୋଲି । ଏହି ନୂଆ ଜିଲ୍ଲାକୁ ଅଧିକ ଦୃଷ୍ଟି ଦିଆଯାଇ ସୀମାନ୍ତ ଅଞ୍ଚଳ ରକ୍ଷା ଦୃଷ୍ଟିରୁ ଏ ଅଞ୍ଚଳର ବିକାଶ କରାଯାଉଛି ।

ଆମେ ପିପଲକୋଠିରେ ପହଞ୍ଚିଲୁ ପ୍ରାୟ ଦଶଟାବେଳେ । ଏହା ଏ ଅଞ୍ଚଳର ଗୋଟିଏ ଭଲ ଗାଁ । କାଳୀ କମ୍ବଳିବାଲା ବାବାଜୀଙ୍କର ଧର୍ମଶାଳା, ହୋଟେଲ, ଦୋକାନପତ୍ର ଓ ଉତ୍ତର ପ୍ରଦେଶ ସରକାରଙ୍କ ଶିଳ୍ପ ବିଭାଗର ଦୋକାନ ମଧ୍ୟ ଏଠାରେ ଅଛି । ଏଠାରୁ ଆମ୍ଭମାନଙ୍କର ପଦଯାତ୍ରାର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହେଲା । ଏଠାରୁ କିନ୍ତୁ ଆମେ ପରାଶ୍ରୟୀ ନ ହୋଇ ପଦାଶ୍ରୟୀ ହୋଇ ଚାଲିବାର ସ୍ଥିର କରିଥିଲୁ । ଗାଧୁଆ ପାଧୁଆ ଖିଆ ପିଆ କରି ସାଢ଼େ ଏଗାରଟା ସମୟରେ ଯାତ୍ରା ଆରମ୍ଭ କରିବାର ସ୍ଥିର ହେଲା । ଆମେ ଠିକ୍ ସମୟରେ ବାହାରିଲୁ ମାତ୍ର କାର୍ଯ୍ୟ କ୍ଷେତ୍ରରେ ଦେଖାଗଲା ଯେ ଏ ଅଞ୍ଚଳରେ ସୁଦ୍ଧା ଏତେ ଖରା ଯେ ଠିକ୍ ଦୁଇ ପହରେ ଯାତ୍ରା ଆରମ୍ଭ କରିବା ବୋଧହୁଏ ବିଜ୍ଞତାର କାର୍ଯ୍ୟ ନ ଥିଲା ।

କେଦାରନାଥ ଯାତ୍ରା ସମୟରେ ମୋତେ ବାଧ୍ୟ ହୋଇ ସବୁଠାରୁ ଅଧିକ ଚାଲିବାକୁ ପଡ଼ିଥିବାରୁ ପରିଶ୍ରମରେ ମୋର ଅଭ୍ୟାସ ପଡ଼ି ଯାଇଥିଲା । ତେଣୁ ପିପଲକୋଠିରୁ ମୁଁ ବିନା କ୍ଳାନ୍ତିରେ ସହଜରେ ଚାଲି ପାରିଲି । କିନ୍ତୁ ଖରାଯୋଗୁ ଶ୍ରୀ ପଟେଲ ଓ ଆମ ଓଡ଼ିଶାର ଶ୍ରୀ ଚନ୍ଦ୍ରମଣି କାଲେ ଅତିଶୀଘ୍ର ଥକିଗଲେ ଓ ପାଞ୍ଚ ମାଇଲ ବାଟ ଚାଲିଲା ପରେ ଆମେ ଯେତେବେଳେ ବେଲାକୁଚିରେ ପହଞ୍ଚିଲୁ, ସେତେବେଳେ ସେମାନଙ୍କର ମୁହଁଗୁଡ଼ିକ ଶୁଖି ଯାଇଥିଲା । ସେ ଦିନ ସେଠାରେ ରାତିରେ ରହିଥିଲେ ହୋଇଥାନ୍ତା । ମାତ୍ର ସେତେବେଳେ ମୋଟେ ତିନିଟା

ବାଜଥିଲା । ତେଣୁ ଆଜ କିଛି ଦୂର ଯିବାକୁ ହେବ ନିଶ୍ଚୟ କରି ସେଠାରେ ଘଣ୍ଟାଏ ବିଶ୍ରାମ କରି ବାହାରିଲୁ । କିନ୍ତୁ ରାସ୍ତାରେ ଭଲ ଚଟି ଘର ପାଖରେ କେଉଁଠି ଦେଖା ଯାଉ ନଥିଲା । ତହିଁର ପରବର୍ତ୍ତୀ ଚଟି-ଗୁଲବକୋଠି ମଟର ରାସ୍ତାରୁ ବହୁ ଉଚ୍ଚରେ ପର୍ବତ ଉପରେ । ଯେତେ ଉପରକୁ ଉଠିବାର କାଠିକର ପାଠ । ତେଣୁ ଯଥାସାଧ୍ୟ ନିଜକୁ ଟାଣି ଓଟାରି ଚାଲିବାକୁ ଲାଗିଲୁ । ସନ୍ଧ୍ୟାପରେ ସେ ଅଞ୍ଚଳରେ ଚାଲିବା ବାଞ୍ଛନୀୟ ନୁହେ । ତେଣୁ ଠିକ୍ ସନ୍ଧ୍ୟାରେ କୁମାରଚଟି ନାମକ ଗୋଟିଏ ସ୍ଥାନରେ ପହଞ୍ଚି ଗୋଟିଏ ସନ୍ତସନ୍ତିଆ ସ୍ଥାନରେ ଆଶ୍ରୟ ନେଲୁ ।

ତହିଁ ଆରଦିନ କୋଡ଼ିଏ ତାରିଖ । ଶ୍ରୀ ପଟିଲ୍ ଆମ୍ଭମାନଙ୍କ ମଧ୍ୟରେ ସବୁଠାରୁ ବୟୋଜ୍ୟେଷ୍ଠ । ବୟସ ପ୍ରାୟ ୬୭ ବର୍ଷ । ଚନ୍ଦ୍ରମଣିବାବୁ ନିଜର ପୃଥୁଳ ବପୁ ନେଇ ଚାଲି ପାରୁଥିନଲେ ଓ ପୂର୍ବ ଦିନ ଦୁହେଁ ଥକି ଯାଇଥିଲେ । ତେଣୁ ସେମାନେ ପ୍ରସ୍ତାବ କଲେ ଏଠାରୁ ଜଳଖିଆ ଖାଇ-ସାରି ବାହାରିବା । ମାତ୍ର ଏ ଅଞ୍ଚଳରେ ସବୁଠାରେ ଯାତ୍ରୀମାନଙ୍କୁ ପରାମର୍ଶ ପଥରମାନଙ୍କରେ ଓ କାନ୍ଥମାନଙ୍କରେ ଲେଖାଥାଏ "ସୂର୍ଯ୍ୟୋଦୟ ଆଗରୁ ଯାତ୍ରା ଆରମ୍ଭ କର" "ଖୁବ୍ ଲେମ୍ବୁ ପାଣି ପିଅ' । ତେଣୁ ମୁଁ ପରାମର୍ଶ ଦେଲି "ସକାଳୁ ଯାତ୍ରା ଆରମ୍ଭ କରିଯାଉ ଓ ବାଟରେ ଭଲ ଚଟି ଦେଖି ମୁଁ ସେଠି ଜଳଖିଆ ବନ୍ଦୋବସ୍ତ କରି ରଖିବି ।" ଏହି ପ୍ରସ୍ତାବ ମତେ ମୁଁ ସେଠାରୁ ପାଞ୍ଚ ମାଇଲ ବାଟରେ ଥିବା ପିଉନ ଚଟିକୁ ଆଗରୁ ଯାଇ ବନ୍ଧୁମାନଙ୍କ ପାଇଁ ଦୋକାନୀକୁ ଜଳଖିଆ ଅର୍ଡ଼ର ଦେଇ ବନ୍ଧୁମାନଙ୍କର ଅପେକ୍ଷାରେ ବସିଲି । ବନ୍ଧୁମାନଙ୍କ ମଧ୍ୟରୁ ଶ୍ରୀ ପାଙ୍ଗାର୍‌କର୍ ଭଲ ଚାଲି ପାରନ୍ତି । କିନ୍ତୁ ଅନ୍ୟ ଦୁଇଜଣ ପଛେଇ ଯାଇଥିଲେ । ସେମାନଙ୍କ ପକ୍ଷରେ ଏଇ ପାଞ୍ଚମାଇଲ ବାଟ ଆସିବାକୁ ପ୍ରାୟ ନଅଣ୍ଟା ହୋଇଗଲା । ଆମେ ସେଠାରୁ ବାହାରି ଯୋଶୀମଠକୁ ମଧ୍ୟାହ୍ନ ସୁଦ୍ଧା ପହଞ୍ଚିବାର ସ୍ଥିର କରିଥିଲୁ । କିନ୍ତୁ ଜଳଖିଆ ସାରି ବାହାରୁ ବାହାରୁ ପ୍ରାୟ ଦଶଟା ହୋଇଗଲା । ବାଟରେ ଚାଲିଲାବେଳେ ପ୍ରଚଣ୍ଡ ଖରା । ଏଠାର ଖରା ଓ ଓଡ଼ିଶାର ଖରାରେ ବିଶେଷ କିଛି ପାର୍ଥକ୍ୟ ନାହିଁ—ଏ ଅଞ୍ଚଳ ଏତେ ଉଚ୍ଚରେ ଥାଇ ସୁଦ୍ଧା । ସମୁଦ୍ର ପତ୍ତନରୁ ପିପଲକୋଠିର ଉଚ୍ଚତା ପ୍ରାୟ ୪୩ ଶହ ଫୁଟ । ଶରତ୍‌କାଳରେ ଖରା ବେଶ୍ ବାଧୁଥାଏ ବିଶେଷତଃ ଆମେ ଗରମ ପୋଷାକ ପିନ୍ଧି ଥିବାରୁ ।


Digitized by srujanika@gmail.com

ବହୁ କଷ୍ଟରେ ବାରଟା ପରେ ଯୋଶୀମଠରେ ପହଞ୍ଚିଲୁ । ମୁଁ ପ୍ରସ୍ତାବ କଲି ଯେ ଶ୍ରୀ ପଟ୍ଟନାୟକ ଓ ଶ୍ରୀ ଚନ୍ଦ୍ରମଣି କାନୁନ୍‌ଗୋଙ୍କ ପାଇଁ ଘୋଡ଼ା ବା କଣ୍ଡିର ବ୍ୟବସ୍ଥା କରାଯାଉ । ଶ୍ରୀ ପଟ୍ଟନାୟକ ଧୈର୍ଯ୍ୟର ସହିତ ଏ ପ୍ରସ୍ତାବରେ ଅସମ୍ମତ ହେଲେ । କିନ୍ତୁ ଚନ୍ଦ୍ରମଣି ବାବୁଙ୍କର କ୍ଳାନ୍ତି ଯୋଗୁଁ ସ୍ୱାସ୍ଥ୍ୟହାନିର ଭୟ ଥାଏ । ସେ ଘୋଡ଼ାଭଡ଼ା ପ୍ରସ୍ତାବରେ ରାଜି ହେଲେ ନାହିଁ । ଯୋଶୀ-ମଠରେ ସେହି ସମୟରେ 'କଣ୍ଡି' ମିଳିଲା ନାହିଁ । ଭାଗ୍ୟକ୍ରମେ ବା ଦୁର୍ଭାଗ୍ୟକ୍ରମେ ସେତିକିବେଳେ ସେଠାରେ ଜଣେ କଣ୍ଡିବାଲା ଆମ ପାଖକୁ ଆସିଲା । ଚନ୍ଦ୍ରମଣିବାବୁଙ୍କର ଓଜନ ସତ୍ତ୍ୱେ ସେ ତାଙ୍କୁ କଣ୍ଡିରେ ଯୋଶୀମଠରୁ ବଦ୍ରୀନାଥ ପର୍ଯ୍ୟନ୍ତ ନେଇ ଫେରାଇ ଆଣିବାକୁ ରାଜି ହେଲା ଓ ଆମ ସାଙ୍ଗରେ ଚାଲିଲା ।

ଯୋଶୀମଠ ହେଉଛି ଜ୍ୟୋତିର୍ମଠ ନାମର ଅପଭ୍ରଂଶ । ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କ ଭାରତର ଚାରି ମଠ ମଧ୍ୟରୁ ଗୋଟିଏ ମଠ ଏଠାରେ ଅଛି । ଶୀତ ଦିନରେ ବଦ୍ରୀନାଥ ମନ୍ଦିରରେ ତାଲା ପଡ଼ିଲେ ପୂଜକମାନେ ଦେବତାଙ୍କର ଚଳନ୍ତି ପ୍ରତିମାକୁ ଏଠାକୁ ଆଣନ୍ତି ଓ ପୂଜା କରନ୍ତି । ଏଠାରେ ଅନେକ ମନ୍ଦିର ଅଛି । ସେଥିମଧ୍ୟରୁ ଶଙ୍କରାଚାର୍ଯ୍ୟଙ୍କ ମଠ ଓ ନୃସିଂହ ମନ୍ଦିର ପ୍ରସିଦ୍ଧ । ଆମ୍ଭେମାନେ ନୃସିଂହ ମନ୍ଦିର ଦର୍ଶନ କରିବା ପାଇଁ ଗଲୁ । କିନ୍ତୁ ମୁଁ ଦେଖିଲି ସାଧାରଣତଃ ବିଷ୍ଣୁ ମନ୍ଦିର ଯେପରି ପୂର୍ବମୁଖୀ ଥାଏ ଏଠାରେ ନୃସିଂହ ମନ୍ଦିର ବିଷ୍ଣୁ ମନ୍ଦିର ହେଲେ ସୁଦ୍ଧା ପଶ୍ଚିମାଭିମୁଖୀ । ଏଠାରେ ନୃସିଂହ ମୂର୍ତ୍ତି ସଙ୍ଗେ ବଦ୍ରୀନାରାୟଣ, ଲକ୍ଷ୍ମୀ ଓ ଉଦ୍ଧବ ଆଦିଙ୍କର ମୂର୍ତ୍ତି ମଧ୍ୟ ପୂଜା ପାଉଛନ୍ତି ।

ଯୋଶୀମଠରେ ବହୁତ ଶିଖ ରହନ୍ତି । ବଦ୍ରୀନାଥ ରାସ୍ତାଆଡ଼େ ଶିଖମାନଙ୍କର ଗୋଟିଏ ତୀର୍ଥସ୍ଥାନ ଅଛି । ତାହାର ନାମ 'ଲୋକପାଳ', ସେଠାରେ ଗୁରୁଗୋବିନ୍ଦ ସିଂହ ତପସ୍ୟା କରିଥିଲେ । ତେଣୁ ଅନେକ ଶିଖ ଯାତ୍ରୀ ମଧ୍ୟ ସେ ସ୍ଥାନକୁ ଯାଆନ୍ତି, ବଦ୍ରୀନାଥକୁ ମଧ୍ୟ ଯାଆନ୍ତି । ତେଣୁ ଅନେକ ଶିଖ ବ୍ୟବସାୟୀ ଯୋଶୀମଠରେ ରହନ୍ତି ।

ଅପରାହ୍ଣରେ ଆଉ କିଛି ବାଟ ଯିବା ଉଦ୍ଦେଶ୍ୟରେ ପ୍ରାୟ ସାଢ଼େ ତିନଟା ସମୟରେ ଯୋଶୀମଠରୁ ବାହାରିଲୁ । ଯୋଶୀମଠରୁ ଦୁଇମାଇଲ ଦୂରରେ ବିଷ୍ଣୁ ପ୍ରୟାଗ ଅଳକନନ୍ଦା ସହିତ ବିଷ୍ଣୁଗଙ୍ଗା ବା ଧୌଳିଗଙ୍ଗା

ମିଶିଛି । ଧୌଳିଗଙ୍ଗା ଧବଳଗିରିରୁ ବାହାରିଛି ବୋଲି କହନ୍ତି । ଦୁଇଟି ନଦୀର ସଙ୍ଗମସ୍ଥଳ । ତେଣୁ ଯୋଶୀମଠରୁ ଆମକୁ ପ୍ରାୟ ହଜାରେ ଫୁଟ୍ ରାସ୍ତା ଓହ୍ଲାଇ ଯିବାକୁ ପଡ଼ିଲା । ଓହ୍ଲାଇବାରେ ମୋ ମନରେ ଡରଥିଲେ ସୁଦ୍ଧା ଏବେ ହାତରେ ବାଡ଼ି ଥିବାରୁ ତାହା ବିଶେଷ ସାହାଯ୍ୟ କରିଥିଲା । ବିଷ୍ଣୁ ପ୍ରୟାଗ ପାର ହୋଇ ଆଗକୁ ଯିବାକୁ ହୁଏ ଦୁଇଟି ଅତି ଉଚ୍ଚ ପ୍ରାୟ ସିଧା ପର୍ବତ ମଝିରେ । ଅଲକନନ୍ଦା ବହୁତ ତଳରେ; ରାସ୍ତାରୁ ପ୍ରାୟ ଆଖି ପାଏ ନାହିଁ । ସେଠି ସ୍ରୋତ ଅତି ସଂକୀର୍ଣ୍ଣ । ସନ୍ଧ୍ୟା ପୂର୍ବରୁ ବଲ୍‌ଦୌଡ଼ା ବୋଲି ଗୋଟିଏ ଚଟିରେ ଆଶ୍ରୟ ନେଲୁ । ଏଠାରେ ଦୁଇଆଡ଼େ ପର୍ବତ ଏତେ ଉଚ୍ଚ ଯେ ସକାଳ ଏଗାରଟା ପର୍ଯ୍ୟନ୍ତ ଦେଖାଯାଏ ନାହିଁ ଓ ଦୁଇଟା ପୂର୍ବରୁ ପଶ୍ଚିମ ଦିଗର ପର୍ବତ ଉହାଡ଼ରେ ଲୁଚି ଯାଉଥିବ ।

ତହିଁ ଆରଦିନ ଏକୋଇଶ ତାରିଖ । ସକାଳୁ ଉଠି ପ୍ରାୟ ଚାରିମାଇଲ୍ ଗଲା ପରେ ଗୋବିନ୍ଦ ଘାଟଚଟି । ଏଠାରୁ ସିଧା ଯାଇଛି ବଦ୍ରୀନାଥ ରାସ୍ତା । ଡାହାଣରେ ଅଲକନନ୍ଦା ନଦୀକୁ ପାର ହୋଇ ଗୋଟିଏ ରାସ୍ତା ଯାଇଛି ବାରମାଇଲ ଦୂରରେ ଥିବା ଶିଖମାନଙ୍କର ତୀର୍ଥ ହେମ୍‌କୁଣ୍ଡ ପାଳକୁ । ସେଠାରେ ହେମକୁଣ୍ଡ ବୋଲି ଗୋଟିଏ ହ୍ରଦ ଅଛି । ଲକ୍ଷ୍ମଣଙ୍କର ଗୋଟିଏ ମନ୍ଦିର ମଧ୍ୟ ଅଛି । ସେଠାରେ ଗୁରୁଗୋବିନ୍ଦ ସିଂହ ତପସ୍ୟା କରିଥିଲେ ବୋଲି ଅନେକ ଶିଖ ଯାତ୍ରୀ ସେ ଆଡ଼େ ଯାଆନ୍ତି ।

ଏଠାରୁ ଦେଢ଼ମାଇଲ ଦୂରରେ ଥିବା ପାଣ୍ଡୁକେଶ୍ୱର ହେଉଛି ଯୋଶୀମଠ ଓ ବଦ୍ରୀନାଥ ମଧ୍ୟରେ ସବୁଠାରୁ ବଡ଼ ଚଟି । ଆମମାନଙ୍କ ମଧ୍ୟରୁ ଶ୍ରୀ ପଟେଲ୍ ଥକି ଯାଇଥିବାରୁ ସେଠାରେ ସ୍ଥିର ହେଲା ଯେ ପାଣ୍ଡୁକେଶ୍ୱରଠାରୁ ବଦ୍ରୀନାଥ ଯାଏ ଏଗାର ମାଇଲ ବାଟ ଘୋଡ଼ାରେ ଯିବା ଭଲ ହେବ ଓ ସେହି ଦିନ ଅର୍ଥାତ୍ ଏକୋଇଶ ତାରିଖ ସନ୍ଧ୍ୟା ସୁଦ୍ଧା ବଦ୍ରୀନାଥରେ ପହଞ୍ଚିବାର ସ୍ଥିର ହେଲା ।

ପାଣ୍ଡୁକେଶ୍ୱରଠାରୁ ବଦ୍ରୀନାଥ ପ୍ରାୟ ଚାରିହଜାର ଫୁଟ ଉଚ୍ଚରେ ଥିଲେ ସୁଦ୍ଧା ଏ ରାସ୍ତା କେଦାରନାଥ ରାସ୍ତା ପରି କଠିନ ନୁହେଁ ଓ ଏହା ଧୀରେ ଧୀରେ ଚଢ଼ାଣିଆ ହୋଇଛି । ଏ ଯାତ୍ରାରେ ଶ୍ରୀ ପଟେଲ୍, ଶ୍ରୀ ପାଙ୍ଗାର୍‌କର୍ ଓ ମୁଁ ବାହାରିଲୁ କାରଣ ଚନ୍ଦ୍ରମଣି ବାବୁ କଣ୍ଡିରେ

ଆସିବାର କଥା । ଏ ଯାତ୍ରାରେ ମୋର ଘୋଡ଼ାଟି ଝଡ଼ୁଠାରୁ ଭଲଥିଲା ।

ବଦ୍ରୀନାଥଠାରୁ ଦୁଇମାଇଲ ଏପଟେ କାଞ୍ଚନଗଙ୍ଗା ବୋଲି ଗୋଟିଏ ଉପନଦୀ ଅଳକନନ୍ଦାରେ ଆସି ମିଶିଛି । ଏ ନଦୀ ବାଲିରେ ସୁନା ବାଲି ଅଛି ବୋଲି କୁହାଯାଏ ।

ବଦ୍ରୀନାଥଠାରୁ ପ୍ରାୟ ଅଧମାଇଲ ଏ ପଟେ ଦେବଦେଖାନି ବୋଲି ଗୋଟିଏ ଉଚ୍ଚସ୍ଥାନ ଅଛି ଯେଉଁଠାରୁ ରାସ୍ତାରେ ଓହ୍ଲାଇ ତଳେ ବଦ୍ରୀନାଥକୁ ଯିବାକୁ ହୁଏ । ବଦ୍ରୀନାଥର ବସତି କେଦାରନାଥ ତୁଳନାରେ ଅଧିକ । ସବୁ ଘର ଟିଣ ଘୋଡ଼ା । ବୋଧହୁଏ ଏହା ଦ୍ୱାରା ବରଫରୁ ଭଲ ରକ୍ଷା ମିଳେ । କେଦାରନାଥ ପହଞ୍ଚିବାର ଏକ ମାଇଲ ପୂର୍ବରୁ ଯେପରି ସମଗ୍ର ମନ୍ଦିରଟି ହିମାଳୟର ପୃଷ୍ଠ ଭୂମିରେ ଅପୂର୍ବ ସୁନ୍ଦର ଦେଖାଯାଏ ବଦ୍ରୀନାଥ ମନ୍ଦିର ସେପରି ଦେଖାଯାଏ ନାହିଁ । ମନ୍ଦିରର ସ୍ୱର୍ଣ୍ଣ ଚୂଡ଼ାଟି ଚାରିଆଡ଼େ ଘରରେ ଘେରା ହୋଇ ମନ୍ଦିରର କେବଳ ସୂଚନା ଦିଏ ।

ବଦ୍ରୀନାଥ ମନ୍ଦିରର ସ୍ଥାପତ୍ୟ ମଧ୍ୟ ଉତ୍ତରାଖଣ୍ଡ ଓ ନେପାଳର ମନ୍ଦିରମାନଙ୍କର ସାଧାରଣ ସ୍ଥାପତ୍ୟରୁ ଭିନ୍ନ ବୋଧ ହେଲା । ଏହାର ମୁଖଶାଳା ରାଜପୁତ କାରୁକାର୍ଯ୍ୟର ଭ୍ରମ ଜନ୍ମାଏ । ମନ୍ଦିରଟି ମଧ୍ୟ କେଦାରନାଥ ମନ୍ଦିରର ପରବର୍ତ୍ତୀ କାଳର ବୋଲି ମନେ ହୁଏ ।

ଆମେ ତିନିଜଣ ବନ୍ଧୁ ସନ୍ଧ୍ୟା ପ୍ରାୟ ସାଢ଼େ ପାଞ୍ଚଟାରେ ବଦ୍ରୀନାଥଧାମରେ ପହଞ୍ଚିଲୁ । ସେତେବେଳେ ଖୁବ୍ ଶୀତ ହେଉଥାଏ । ପୂର୍ବଦିନମାନଙ୍କରେ ବର୍ଷା ହୋଇଥିବାରୁ ଶୀତ ବେଶୀ ହେଉଛି ବୋଲି ଶୁଣିଲୁ । ପାଖର ପର୍ବତମାନଙ୍କ ଉପରେ ବରଫ ପଡ଼ିଥିଲା ।

ଆମର ଚତୁର୍ଥ ବନ୍ଧୁ ଶ୍ରୀ ଚନ୍ଦ୍ରମଣି କାଲେ କଣ୍ଡିରେ ଆସିବାର ଥିଲା । କିନ୍ତୁ ବସ୍ତବ କଣ୍ଡିବାଲା ନିଜେ କ୍ଷୀଣକାୟ ଥିବାରୁ ତାଙ୍କୁ ବୋହି ବୋଧହୁଏ ନାକେଦମ୍ ହୋଇ ଯାଇଥିଲା । କଣ୍ଡିରେ ବସିବାକୁ ମଧ୍ୟ ଚନ୍ଦ୍ରମଣି ବାବୁ ଭୀଷଣ ଅସୁବିଧା ଭୋଗ କରୁଥିଲେ । କଣ୍ଡି ସାଧାରଣତଃ ଶୀର୍ଣ୍ଣକାୟ ବ୍ୟକ୍ତିମାନଙ୍କ ପାଇଁ ଉଦ୍ଦିଷ୍ଟ । ଏଥିପାଇଁ ତାଙ୍କୁ ଅଧିକାଂଶ ବାଟ ଚାଲି ଆସିବାକୁ ପଡ଼ିଲା । ଆମେ ଘୋଡ଼ାରେ ଆସିବାରୁ ଗୋଟିଏ ବେଳାରେ ଏଗାରମାଇଲ ବାଟ ଆସି ପାରିଲୁ ବିଶେଷ କିଛି ଅସୁବିଧା

ଭୋଗ ନ କରୁ । କିନ୍ତୁ ଚନ୍ଦ୍ରମଣି ବାବୁଙ୍କ ପକ୍ଷରେ ସେଦିନ ଷୋହଳ-ମାଇଲରୁ ଅଧିକ ବାଟ ପ୍ରାୟ ଚାଲିକରି ଆସିବାକୁ ପଡ଼ିଲା । ଏହା ସାଧାରଣ ଲୋକଙ୍କ ପକ୍ଷରେ ମଧ୍ୟ ଦୁଃସାଧ୍ୟ ବ୍ୟାପାର । ତାଙ୍କର ଶରୀରତ ଆଗରୁ ଟିକିଏ ଅସୁସ୍ଥ ଥିଲା । ସେ ଦିନ ସକାଳୁ ··ବାହାରିଲା ବେଳେ ବିଶେଷ ଶୀତ ନ ଥିବା ଯୋଗୁଁ ସେ ନିଜର ଗରମ କୋଟଟି ବିଛଣା-ପତ୍ରରେ ଗୁଡ଼ାଇ ଦେଇ କେବଳ ଗୋଟିଏ ସିଲ୍କ ପଞ୍ଜାବୀ ଓ ସୁଏଟର୍ ଖଣ୍ଡିଏ ପିନ୍ଧି ବାହାରିଥିଲେ । ବଦ୍ରୀନାଥରେ ତାଙ୍କର ପହଞ୍ଚିବା ସମୟରେ ରାତ୍ତି ସାଢ଼େ ସାତଟା ହୋଇ ଯାଇଥିଲା, ଭୀଷଣ ଶୀତ ଓ କ୍ଳାନ୍ତିରେ ସେ ଅଧୀର ହୋଇ ପଡ଼ିଥିଲେ । ତାଙ୍କୁ ଜ୍ୱର ହୋଇଯିବ ବୋଲି ଆମେ ଆଶଙ୍କା କଲୁ । ସେ ରାତିରେ ଆମେ ଗୋଟିଏ ପଞ୍ଜାବୀ ଧର୍ମଶାଳାରେ ଆଶ୍ରୟ ନେଲୁ ।

ବଦ୍ରୀନାଥ ପ୍ରାୟ ଛଅମାସ ଜନଶୂନ୍ୟ ହୁଏ ଓ ବରଫରେ ଢାଙ୍କି ହୋଇଥାଏ । ବୈଶାଖ ଜ୍ୟେଷ୍ଠରୁ ଏଠାରେ ଭିଡ଼ ହୁଏ । ଏଠାରେ ଧର୍ମଶାଳା ଆଦି ଦେଖିଲେ ଏହାକୁ ଏ ଅଞ୍ଚଳର ସବୁଠାରୁ ବଡ଼ ସହର ବୋଲି କହିବାକୁ ହେବ । ଗୋଟିଏ ରାସ୍ତା ମନ୍ଦିରରୁ ଦୁଇ ଆଡ଼କୁ ଲମ୍ବି ଯାଇଛି ଓ ରାସ୍ତାର ଦୁଇକଡ଼ରେ ଦୋକାନମାନ; ବିଶେଷତଃ ଗୁଡ଼ିଆ ଦୋକାନ, ପ୍ରସାଦ ଦୋକାନ, ମନୋହାରୀ ଓ ଔଷଧ ଦୋକାନ । ଔଷଧ ମଧ୍ୟରେ ଶିଳାଜିତ୍, କସ୍ତୁରୀ ଓ ସୁରମା ପ୍ରଚୁର । ଏଠାରେ ଗୋଟିଏ କଥା ଆମେ ବିଶେଷ ଲକ୍ଷ୍ୟ କଲୁ । ଯେଉଁ ଦୋକାନ ମନ୍ଦିରର ଯେତେ ପାଖରେ, ଜିନିଷ ପତ୍ର ସେଠାରେ ସେତିକି ମହରଗ । ଗିର୍ଜା ଘରର ଯେତିକି ପାଖ, ସ୍ୱର୍ଗରୁ ସେତିକି ଦୂର ବୋଲି ଇଂରେଜିରେ ଗୋଟିଏ କଥା ଅଛି ଏଠାରେ ମଧ୍ୟ କୁହାଯାଇ ପାରେ 'Nearer the temple, dearer the thing ।

ବଦ୍ରୀନାଥ ମନ୍ଦିର ପାଖରେ ଅଳକନନ୍ଦା ନଦୀ କୂଳରେ ପାଞ୍ଚଟି ତପ୍ତକୁଣ୍ଡ ଅଛି । ଏ କୁଣ୍ଡମାନଙ୍କର ଜଳ ଗରମ ହେଲେ ମଧ୍ୟ ଅବଗାହନ ଯୋଗ୍ୟ କିନ୍ତୁ ଅଧିକ ସମୟ ପାଣି ଭିତରେ ରହିଲେ କଷ୍ଟ ହୁଏ । କଠୋର ପରିଶ୍ରମ ପରେ ଏ କୁଣ୍ଡମାନଙ୍କରେ ସ୍ନାନ କଲେ କ୍ଳାନ୍ତି ଅପନୋଦନ ହୁଏ ।

ଆମ୍ଭେମାନେ ବାଇଶ ତାରିଖ ସକାଳୁ ଉଠି କୁଣ୍ଡରେ ସ୍ନାନ କରି ଦେବଦର୍ଶନ ପାଇଁ ଗଲୁ । ଏଠାରେ କୌଣସି ପଣ୍ଡା ଆମର ନ ଥିଲେ । ପୂର୍ବେ କୁହାଯାଇଛି ବଦ୍ରୀନାଥ ମନ୍ଦିର ବର୍ତ୍ତମାନ୍ ଟ୍ରଷ୍ଟ କମିଟି ଦ୍ୱାରା ପରିଚାଳିତ । ବିଭିନ୍ନ ପ୍ରକାର ଭୋଗ ଓ ପୂଜା ପାଇଁ ନିର୍ଦ୍ଧାରିତ ଶୁଳ୍କ ଅଛି । କିନ୍ତୁ ଏ ସବୁ ଆମ ଭଳିଆ ଲୋକଙ୍କର ସାଧ୍ୟାତୀତ । ଉଦାହରଣ ସ୍ୱରୂପ ଏଠାରେ ରାଜଭୋଗ ପାଇଁ ପାଞ୍ଚହଜାର ଟଙ୍କା ଲାଗେ । ଆମେ କେବଳ ନିଜ ହୃଦୟର ଭକ୍ତିର ନୈବେଦ୍ୟ ଦେଇ ଫେରିଲୁ ।

ବଦ୍ରୀନାଥ ମନ୍ଦିରଠୁ କିଛି ଦୂରରେ ଅଳକନନ୍ଦା ତୀରରେ ବ୍ରହ୍ମକପାଳ ବୋଲି ଗୋଟିଏ ତୀର୍ଥ ଅଛି । ଭଗବାନ୍ ଶଙ୍କର ଏଠାରେ ଗୋହତ୍ୟା ଓ ବ୍ରହ୍ମହତ୍ୟାର ପ୍ରାୟଶ୍ଚିତ୍ତ କରିଥିଲେ । ଏଠାରେ ପିତୃପୁରୁଷଙ୍କୁ ପିଣ୍ଡ ଦେଲେ ଆଉ କେବେ ଶ୍ରାଦ୍ଧ ବା ତର୍ପଣର ଦରକାର ପଡ଼େ ନାହିଁ ବୋଲି ଏ ତୀର୍ଥ ପ୍ରସିଦ୍ଧ । ଆମ ମଧ୍ୟରୁ ପିତୃହୀନ ଶ୍ରୀ ପଟ୍ଟନାୟକ ଓ ଶ୍ରୀ ଚନ୍ଦ୍ରମଣି କାଳେ ଏଠାରେ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ପିଣ୍ଡଦାନ କରିଥିଲେ ।

ହିନ୍ଦୁଧର୍ମ ମୃତ୍ୟୁ ଓ ମରଣଶୀଳକୁ ଅତି କ୍ଷୁଦ୍ରସ୍ଥାନ ଦେଇ ଆସିଛି । ଆମର ଲୋକେ ଯେତେ ବଡ଼ ହେଲେ ସୁଦ୍ଧା ମୃତ୍ୟୁ ପରେ ତାଙ୍କର ଶରୀର ଭସ୍ମ ଓ ଅସ୍ଥି ତ୍ରିବେଣୀରେ ବିସର୍ଜନ କଲେ ଭୌତିକ ଶରୀରର ଶେଷ । ପିତୃପିତାମହର ସ୍ମୃତି ଟିକକ ରହେ ଯାହା ଶ୍ରାଦ୍ଧ ଓ ତର୍ପଣରେ ବଂଶଧରମାନେ ଆବରି ଧରିଥାନ୍ତି । ସେହି ସ୍ମୃତିର ମଧ୍ୟ ଶେଷାଞ୍ଜଳି ଏଇ ସ୍ଥାନ । ଆମେ ଅନ୍ୟ ଧର୍ମରେ ଦେଖୁ ରାଜା ବା ସମ୍ରାଟ୍‌ମାନେ ମଲା ପୂର୍ବରୁ ନିଜର ରୁଚି ଅନୁସାରେ ପ୍ରଶସ୍ତ କବର ଓ ସ୍ମୃତି ମନ୍ଦିର ନିର୍ମାଣ କରି ଯାଇଛନ୍ତି ଓ ମୃତ୍ୟୁକୁ କେତେ ଗୌରବ ଦେଇଛନ୍ତି । କିନ୍ତୁ ରାମ, କୃଷ୍ଣ, ବିକ୍ରମାଦିତ୍ୟ, ଚନ୍ଦ୍ରଗୁପ୍ତ ଆଦି ମହାପୁରୁଷ ବା ସମ୍ରାଟ୍‌ମାନଙ୍କର ଦେହାବଶେଷ ପୃଥିବୀ ଭୁଲିଯାଇଛି ।

ବ୍ରହ୍ମକପାଳ ତୀର୍ଥ—ଯେଉଁଠି ନିଷ୍ଠାପର ହିନ୍ଦୁମାନେ ଆସନ୍ତି ପୂର୍ବ ପୁରୁଷଙ୍କ ସ୍ମୃତିର ବିସର୍ଜନ ପାଇଁ, ସେଠାରେ ମଧ୍ୟ ସେହିମାନେ ଭୁଲିଯାନ୍ତି ପୂର୍ବପୁରୁଷମାନଙ୍କ ସ୍ମୃତିକୁ ଚିରସ୍ଥାୟୀ କରିବା ପାଇଁ ଏହି ଘାଟରେ

ମାର୍ବଲ ଫଳକ ସଜାଇ। ମନୁଷ୍ୟ ପ୍ରକୃତିର କ ସ୍ୱତନ୍ତ୍ର ବିଡ଼ମ୍ବନା ! ଇନ୍ଦ୍ରଧାମରୁ ଶୂନ୍ୟଦାୟୁ ନେଇଥିବା ପୂର୍ବପୁରୁଷଙ୍କର ସ୍ମୃତିକୁ ଚିରସ୍ଥାୟୀ କରିବାର ସବୁଠାରୁ ଶସ୍ତା ଓ ଆଧୁନିକ ଉପାୟ ହେଉଛି ଏଇ ସ୍ମୃତି ଫଳକ।

ବଦ୍ରୀନାଥ ଠାରୁ ଦୁଇମାଇଲ ଦୂରରେ ମାନା ଗାଁ ଭାରତବର୍ଷ ତିବ୍ବତ ସୀମାନ୍ତରେ ଶେଷ ଗାଁ। ଚୀନରୁ ଆକ୍ରମଣର ଆଶଙ୍କା ଥିବାରୁ ଭାରତ ସରକାର ଏ ସବୁ ସ୍ଥାନକୁ ଭଲ ଭାବରେ ରକ୍ଷା କରିବାକୁ ଚେଷ୍ଟା କରୁଛନ୍ତି। ତିବ୍ବତ ସୀମାନ୍ତର ସେ ଆଡ଼େ ଚୀନ ସରକାର ଭଲ ରାସ୍ତା ଏବେ ତିଆରି କରୁଛନ୍ତି। ଗତ ବର୍ଷ ଅଗଷ୍ଟ ମାସରେ ଯେତେବେଳେ କାଶ୍ମୀରର ଲଦାଖ ସୀମାନ୍ତରେ ଚୀନ ସୈନ୍ୟମାନେ କେତେ ଭାରତୀୟ ସୈନ୍ୟମାନଙ୍କୁ ମାରି ଅନ୍ୟମାନଙ୍କୁ ବନ୍ଦୀ କରି ନେଲେ, ସେତେବେଳେ ଜଣା ପଡ଼ିଲା ସେ ଚୀନ ସୈନ୍ୟମାନେ ଯେଉଁ ଭାରତୀୟ ଅଞ୍ଚଳକୁ (ଅକ୍‌ସାଇ ଚୀନ୍) ଜବରଦସ୍ତି ଦଖଲ କରିଛନ୍ତି, ସେଠାରେ ସେମାନେ ରାସ୍ତାଘାଟ ଶୀଘ୍ର ତିଆରି କରୁଛନ୍ତି। ଏବେ ଭାରତ ପକ୍ଷରୁ ମଧ୍ୟ ସୈନ୍ୟ ପରିଚାଳନାର ସୁବିଧା ପାଇଁ ଉତ୍ତର ସୀମାନ୍ତ ଅଞ୍ଚଳରେ ଭଲ ରାସ୍ତା ତିଆରି କରିବାର ବ୍ୟବସ୍ଥା ହେଉଛି। ଏହାର ଗୋଟିଏ ପରିଣତି ହେଉଛି; ଅଳ୍ପ କେତେ ବର୍ଷ ମଧ୍ୟରେ ହରିଦ୍ୱାରଠାରୁ ବଦ୍ରୀନାଥଯାଏ ପକ୍କାରାସ୍ତା ତିଆରି ହୋଇଯିବ ଓ ବର୍ଷାଦିନେ ସୁଦ୍ଧା ବସ୍‌ରେ ସିଧା ବଦ୍ରୀନାଥ ପର୍ଯ୍ୟନ୍ତ ଯିବାର ସମ୍ଭବ ହେବ। ଏଥିରେ ଅବଶ୍ୟ ସୁବିଧା ଯଥେଷ୍ଟ ହେବ। କିନ୍ତୁ ବର୍ତ୍ତମାନ ଯାତ୍ରୀମାନେ କଷ୍ଟବାଟ ଚାଲିଯିବା ଫଳରେ ଯେଉଁ ମଜା ପାଉଛନ୍ତି, ତାହା ଆଉ ସେ ସମୟରେ ରହିବ ନାହିଁ। ସ୍ୱର୍ଗକୁ ଆଜକାଲ ସିଧା ସଳଖ ରାସ୍ତା ନାହିଁ ବୋଲି ସେଠାକୁ ଯିବାକୁ ଏତେ ସାଧନା, ଏତେ ପୁଣ୍ୟ ସଞ୍ଚୟ ଦରକାର ପଡ଼ୁଛି। ରାବଣ ଯଦି ସ୍ୱର୍ଗକୁ ନିଶୁଣି ବସାଇ ଦେଇଥାନ୍ତା, ତାହା ହେଲେ ଅଧିକ ଲୋକେ ସ୍ୱର୍ଗକୁ ନ ଯାଇ ନରକକୁ ଯିବାର ଆଗ୍ରହ ପ୍ରକାଶ କରନ୍ତେ।

ଦୁଇଆଡ଼େ ଦୁଇଟି ପର୍ବତ; ନର ଓ ନାରାୟଣ। ମଝିରେ ଅଲକନନ୍ଦା ନଦୀ ଓ ବଦ୍ରୀନାଥର ଜନବସତି। ପ୍ରାକୃତିକ ଶୋଭା କେଦାରନାଥ ପରି ମନୋହର ନୁହେଁ। ହୁଏତ ପୂର୍ବକାଳରେ ବହୁ ସନ୍ୟାସୀ ଓ ବାନପ୍ରସ୍ଥମାନଙ୍କର ସାଧନା ପୀଠଥିଲା ଏହି ସ୍ଥଳ। ଭାରତର

ଇତିହାସର ବହୁ ବିପର୍ଯ୍ୟୟ, ବହୁ କୋଳାହଳ ଏ ଅଞ୍ଚଳର ସୌମ୍ୟ ସୁଷମାକୁ ବିକୃତ କରି ପାରି ନାହିଁ କିନ୍ତୁ କାହାନ୍ତି ସେହି ସନ୍ନ୍ୟାସୀମାନେ, ଯେଉଁମାନେ ଯୁଗ ଯୁଗ ଧରି କେତେ ରାଜାଧିରାଜ, କେତେ କୋଟିପତି, କେତେ ପଣ୍ଡିତଙ୍କୁ ପ୍ରବୃତ୍ତିରୁ ନିବୃତ୍ତି ମାର୍ଗକୁ, ସାମ୍ରାଜ୍ୟରୁ ସ୍ୱରାଜ୍ୟର ମାର୍ଗକୁ ଟାଣି ନେଇଛନ୍ତି । ହୁଏତ ଏବେ ବି ଅଛନ୍ତି କିନ୍ତୁ ସେ ସ୍ପର୍ଶମଣିକୁ କେବଳ ସାଧକହିଁ ଚିହ୍ନି ପାରେ । ସମୟର କ୍ରୀତଦାସ ଆମ୍ଭେମାନେ ସେ ସ୍ପର୍ଶମଣିର ସନ୍ଧାନ ପାଇଁ ଉଦ୍ୟୋଗ ମଧ୍ୟ କରି ନଥିଲୁ, ଯେଉଁ ସ୍ପର୍ଶମଣି ଲାଭ କରିବା ପାଇଁ ଶ୍ରୀକୃଷ୍ଣ ଉଦ୍ଧବଙ୍କୁ ପ୍ରେରଣା ଦେଇଥିଲେ ।

ଅଳକନନ୍ଦାର ଉଦ୍‌ଗମ ସ୍ଥଳୀ ଅଳକା ପୁରୀ । କୁବେରଙ୍କ ବାସଭୂମି; ଯାହାକୁ କାଳିଦାସ ମେଘଦୂତରେ ଏତେ ସମୃଦ୍ଧ ରୂପେ ଚିତ୍ରିତ କରିଛନ୍ତି । ଆଜି ସେ କୁବେରପୁରୀ କାହିଁ ? ମରକତ ବୈଦୁର୍ଯ୍ୟାଦି-ମଣିଖଚିତ ସେ ଯକ୍ଷପୁରୀ କାହିଁ ? କାହିଁ ସେହି ବିରହୀ ଯକ୍ଷ ଓ ଯକ୍ଷବଧୂ ? ହୁଏତ ଆଜି ସେହି ବିରହୀ ଯକ୍ଷର ବଂଶଧର ଶେରପା କାମ କରୁଥିବ ଘରଠାରୁ ବହୁଦୂରରେ ଓ ବିରହିଣୀ ଚକିତହରିଣୀପ୍ରେକ୍ଷଣା ମଳିନ-ବସନା ଯକ୍ଷବଧୂ ତାର ଛୋଟି କୁଡ଼ିଆରେ ଚା ଦୋକାନ ଖୋଲି ବସିଥିବ ଯାତ୍ରୀମାନଙ୍କର ପ୍ରତୀକ୍ଷାରେ ।

ବାଇଶ ତାରିଖ ଦିନଯାକ ବଦ୍ରୀନାଥରେ ରହିଲୁ । ଇତି ମଧ୍ୟରେ ଚନ୍ଦ୍ରମଣି ବାବୁଙ୍କର ଶରୀର ଅସୁସ୍ଥ ହେଲା । ଖାଇବା ଜିନିଷ ବାନ୍ତି ହୋଇଯାଏ ଓ ଖାଇବାରେ ଅରୁଚି ଆସେ । ସର୍ଦ୍ଦିର ଲକ୍ଷଣ ମଧ୍ୟଥାଏ । ଡାକ୍ତରଙ୍କ ପରାମର୍ଶ କରିବାରେ ଡାକ୍ତର କୁଇନାଇନ୍ କିଛି ଦେଲେ । ଫଳରେ ତାଙ୍କର ମୁଣ୍ଡବୁଲା ଧଇଲା ଓ ଅରୁଚି ଗଲାନାହିଁ । ସେଥିପାଇଁ ତହିଁ ଆରଦିନ ବଦ୍ରୀନାଥରୁ ଫେରିଲା ବାଟରେ ସେ ବହୁତ କଷ୍ଟ ପାଇଲେ ।

ତେଇଶ ତାରିଖ ସକାଳ ପ୍ରାୟ ନଅଟା ସମୟରେ ଆମେ ବଦ୍ରୀନାଥରୁ ଫେରିବା ପାଇଁ ବାହାରିଲୁ, ପଦବ୍ରଜରେ । ପର୍ବତରୁ ଓହ୍ଲାଇବା ବିଶେଷ କଷ୍ଟ ହେଲା ନାହିଁ ବିଶେଷତଃ ଚାଲିବାରେ ଅଭ୍ୟାସ ପଡ଼ି ଯାଇଥିବାରୁ ।' କିନ୍ତୁ ଆମ ସଙ୍ଗେ ଚନ୍ଦ୍ରମଣି ବାବୁ ଏକ ଉପାସରେ ଦୁଇଦିନ ରହି ଯାଇଥିବାରୁ ଓ କୁଇନାଇନ୍‌ର ପ୍ରକୋପରୁ ଚାଲିବାରେ ବହୁତ କଷ୍ଟ ପାଇଲେ । ରାସ୍ତାରେ ତାଙ୍କୁ ପୁଣି ବାନ୍ତି ହେଲା । ଭାଗ୍ୟକ୍ରମେ

ରାସ୍ତାରେ ତାଙ୍କ ପାଇଁ ଗୋଟିଏ ଘୋଡ଼ା ବନ୍ଦୋବସ୍ତ ହେଲା ଓ ସେଥିରେ ସେ ପାଣ୍ଡୁକେଶ୍ୱର ପର୍ଯ୍ୟନ୍ତ ଫେରିଲେ ।

ତାଙ୍କର କ୍ଳାନ୍ତି ଯୋଗୁ ଓ ବର୍ଷାର ଆଶଙ୍କା ଯୋଗୁ ଆମେ ପାଣ୍ଡୁକେଶ୍ୱରଠାରୁ ଆଉ ଦୁଇ ମାଇଲ ଦୂରରେ ଥିବା 'ଘାଟ' ଚଟିରେ ସେ ରାତିରେ ଆଶ୍ରୟ ନେଲୁ । ଆମେ ଚଟିକୁ ପହଞ୍ଚିଲା ପରେ ବର୍ଷା ଆରମ୍ଭ ହେଲା । ହିମାଳୟ ଅଞ୍ଚଳରେ ବର୍ଷା କେତେବେଳେ ହେବ ଓ କେତେ ହେବ କିଛି ଠିକଣା ନାହିଁ ।

ତହିଁ ଆରଦିନ ସକାଳେ ପ୍ରାୟ ନଅଟା ସମୟରେ ଆମେ ବିଷ୍ଣୁ-ପ୍ରୟାଗରେ ପହଞ୍ଚିଲୁ । ବିଷ୍ଣୁପ୍ରୟାଗଠାରୁ ଯୋଶୀମଠ ପ୍ରାୟ ହଜାରେ ଫୁଟ ଉଚ୍ଚରେ ଅଥଚ ପ୍ରାୟ ଦେଢ଼ମାଇଲ ଦୂରରେ । ତେଣୁ ଏହା ଖୁବ୍ ପାଖରେ ଦିଶୁଥିଲେ ସୁଦ୍ଧା ଏତେ ଉପରକୁ ଉଠିବାକୁ ବହୁତ କଷ୍ଟହୁଏ । ଚନ୍ଦ୍ରମଣିବାବୁ ପୂର୍ବର ତିକ୍ତ ଅଭିଜ୍ଞତା ଯୋଗୁ ଏ ବାଟରେ କାଣ୍ଡିରେ ଯିବାକୁ ମନା କଲେ, ସେଠାରେ କାଣ୍ଡିର ସୁବିଧା ଥାଇ ମଧ୍ୟ । କିନ୍ତୁ ଦୁଇଦିନରୁ ଅଧିକ ଉପାସ ଓ ପରିଶ୍ରମ ଯୋଗୁଁ ସେ ବଡ଼ କ୍ଳାନ୍ତହୋଇ ପଡ଼ିଥିଲେ । ଖରା ବଢ଼ି ଆସୁଥିଲା । ତାଙ୍କୁ ଏ ରାସ୍ତା ଯିବାକୁ ପ୍ରାୟ ତିନିଘଣ୍ଟା ଲାଗିଥିଲା । ସେ ବାଟରେ ଅନେକ ସ୍ଥାନରେ ବିଶ୍ରାମ ନେବାକୁ ବାଧ୍ୟ ହୋଇଥିଲେ ।

ଯୋଶୀମଠରେ ପହଞ୍ଚିବା ପରେ ଆମେ ଚନ୍ଦ୍ରମଣି ବାବୁଙ୍କୁ ବାକି ରାସ୍ତା ଘୋଡ଼ାରେ ଯିବା ପାଇଁ ଅନୁରୋଧ କଲୁ ଓ ସେ ପ୍ରାୟ ଅନନ୍ୟୋପାୟ ହୋଇ ସେଥିରେ ରାଜି ହେଲେ । ଯୋଶୀମଠରେ ସାମାନ୍ୟ କିଛି ଖିଆ ପିଆ କରି ପ୍ରାୟ ଦେଢ଼ଟାରେ ବାହାରିଲୁ ।

ବଦ୍ରୀନାଥ ରାସ୍ତାକୁ ମଟର ଧରିକି ଅନେକ ଘୁରି ଘୁରି ଯାଇଛି । ସବୁ ପାହାଡ଼ିଆ ଅଞ୍ଚଳରେ ଏପରି ହୋଇଥାଏ । ଏପରି ସବୁ ପାହାଡ଼ିଆ ଅଞ୍ଚ-ଳରେ ଉପରୁ ତଳକୁ ଓ ତଳୁ ଉପରକୁ ଯିବାକୁ ଉଚ୍ଛୁଟ ବାଟ ଚଲା ରାସ୍ତା ମଧ୍ୟ ଥାଏ । ଏପରି ଗୋଟିଏ ରାସ୍ତା ଅଛି ମଟର ରାସ୍ତାରେ ଗଲେ ପାଞ୍ଚମାଇଲ ପଡ଼ିବ କିନ୍ତୁ ଚଲା ରାସ୍ତାରେ ଗଲେ ପ୍ରାୟ ମାଇଲେ ହେବ । ଅବଶ୍ୟ ଅନଭ୍ୟସ୍ତ ଲୋକ ପକ୍ଷରେ ଏପରି ଗାଉଁଲି ରାସ୍ତା ଭୟର କାରଣ । ଆମେ ତିନିଜଣ ବାଙ୍ଗାଳି କୁଳିର ପ୍ରଭାବରେ ପ୍ରଭାବିତ ହୋଇ ଏପରି

ଗୋଟିଏ ରାସ୍ତାରେ ଯିବାକୁ ପ୍ରଲୋଭିତ ହେଲୁ । ବିଶେଷତଃ ସ୍ତ୍ରୀ ଯାତ୍ରୀ-ମାନେ ସେ ରାସ୍ତାରେ ଯିବାର ଦେଖି ଆମେ ବି ଆଗେଇଲୁ । କିନ୍ତୁ ଫର୍ଲଙ୍ଗେ ବାଟ ନ ଯାଉଣୁ ମନରେ ପଶ୍ଚାତ୍ତାପ ହେଲା । ସଙ୍କୀର୍ଣ୍ଣ ରାସ୍ତାରେ ଦୁଇଆଡ଼େ ବିଛୁଆତି ଗଛ ଥାଏ ତହିଁରେ ହାତ ବାଜି କୁଣ୍ଡାଇ ହେଉଥାଏ ଓ ଗଡ଼ାଣିଆ ରାସ୍ତାରେ ଜୋତା ଖସି ବିପଦଗ୍ରସ୍ତ ହେବାର ବିଶେଷ ଭୟ ଥାଏ । ରାସ୍ତା ପଥୁରିଆ । ଅନେକ ଜାଗାରେ ବସିପଡ଼ି ଗୋଡ଼ ବଢ଼ାଇବାକୁ ପଡ଼ୁଥାଏ କିନ୍ତୁ ଆମର ଲାଠି ଓ ଛତା ଦୁଇହାତରେ ଥିବାରୁ ଆମେ ସ୍ଥାନେ ସ୍ଥାନେ ଚତୁଷ୍ପଦ ଜନ୍ତୁ ପରି ଚାଲିଥାଉ । ବହୁ କଷ୍ଟରେ ଯେତେ-ବେଳେ ମୋଟର ରାସ୍ତାକୁ ପହଞ୍ଚିଲୁ ଶ୍ରୀ ପଟେଲ୍ ଆମର କୁଲି ଉପରେ ଖପା ହୋଇ କହିଲେ, "ସରକାର କଣ୍ ଏଡ଼େ ବୋକା ଯେ ଆମ ପାଇଁ ଚକ୍କା ରାସ୍ତା କରିଛି" ଓ ଏପରି ରାସ୍ତାରେ ଆଉ ନ ଯିବାକୁ ପ୍ରତିଜ୍ଞା କଲେ । ଯାହାହେଉ ସେ ଦିନ ସନ୍ଧ୍ୟାରେ ମଧ୍ୟ ଠିକ୍ ବର୍ଷାର ଉପକ୍ରମ ହେବା ପୂର୍ବରୁ ଆମର ପୂର୍ବ ନିର୍ଦ୍ଦିଷ୍ଟ ଗନ୍ତବ୍ୟ ହେଲଙ୍ଗ ଚଟିରେ ପହଞ୍ଚିଗଲୁ ।

ହେଲଙ୍ଗ ଚଟିରୁ ପିପଲକୋଠି ଆଉ ଏଗାର ମାଇଲ ଥାଏ । ତେଣୁ ସେଠାରେ ପହଞ୍ଚିଲା ପରେ ଆମ ମନରେ ଭରସା ଥାଏ ଯେ ତହିଁ ଆରଦିନ ପିପଲକୋଠିରୁ ଶେଷ ବସ୍ ଛାଡ଼ିବା ପୂର୍ବରୁ ଆମେ ଏଇ ଏଗାର ମାଇଲ ବାଟ ଚାଲି ପିପଲକୋଠିରେ ପହଞ୍ଚି ପାରିବୁ । ବାସ୍ତବିକ ହେଲା ସେଇଆ । ଆମେ ବାଟରେ ଦୁଇ ତିନି ସ୍ଥାନରେ ବିଶ୍ରାମ ନେଇ ସୁଦ୍ଧା ପିପଲକୋଠିରେ ସାଢ଼େ ଦଶଟାରେ ପହଞ୍ଚିଗଲୁ । ଏଇଠାରେ ଆମର ଶାରୀରିକ ପରିଶ୍ରମର ପରିସମାପ୍ତି ଘଟିଲା ।

ଆମେ ନିଜର ଦୋଷ ଦୁର୍ବଳତା ଯୋଗୁଁ ଅନେକ କଷ୍ଟ ପାଉ ; ଲାଞ୍ଛନା ଭୋଗକରୁ କିନ୍ତୁ ଅନ୍ୟ ଲୋକ ସେହି ଦୋଷ ଦୁର୍ବଳତା ଯୋଗୁଁ କଷ୍ଟ ପାଇଲେ ଆମେ ମନରେ ସହାନୁଭୂତି ବୋଧ କରିବା ପରିବର୍ତ୍ତେ ଅନେକ ସମୟରେ ମନେ ମନେ ହସୁ । ଏହା ଏକ ମାନବିକ ଦୁର୍ବଳତା ।

ଆମ ବନ୍ଧୁମାନଙ୍କ ମଧ୍ୟରୁ ଆମେ ତିନିଜଣ ଥାଉ ସ୍ଥୂଳ । ତଥାପି ଆମେ ଯେତେବେଳେ ଆମର ଗନ୍ତବ୍ୟ ପଥରେ ସ୍ଥୂଳକାୟ ଭଦ୍ରବ୍ୟକ୍ତି ବା ଭଦ୍ରମହିଳାଙ୍କୁ ଦେଖୁ, ସେତେବେଳେ ସେମାନେ କେତେ

ଓଜନ ଦେହରେ ନେଇ ବୁଲୁଛନ୍ତି, ସେ ବିଷୟ ନେଇ ମନେ ମନେ ଆଲୋଚନା କରି ହସୁଥିଲୁ ।

ସେ ଦିନ ଆମେ ପିପଲକୋଟିରୁ ଶ୍ରୀନଗର ପର୍ଯ୍ୟନ୍ତ ଚବିଶ ଘଣ୍ଟାରେ ଗୋଟିଏ ଖୋଲା ଡାଇନିଙ୍ଗ୍ ରୁମ୍‌ରେ ବିଶ୍ରାମ କରିଥିଲୁ । ଆମ ପାଖରେ ବିଶ୍ରାମ କରୁଥାନ୍ତି ତିନିଜଣ ପ୍ରୌଢ଼ ସ୍ଥୂଳକାୟ ଲକ୍ଷ୍ନୌ-ନିବାସୀ ଭଦ୍ରଲୋକ; ଯେଉଁମାନଙ୍କୁ ଉର୍ଦ୍ଦୁରେ 'ରଇସ୍' କୁହା-ଯାଇପାରେ । ସେମାନେ କେଦାରନାଥ ଓ ବଦ୍ରୀନାଥକୁ ଯିବା ରାସ୍ତାରେ ସେଠାରେ ରାତିରେ ରହିଥାନ୍ତି । ସେମାନେ ଆମଠାରୁ ରାସ୍ତା ବିଷୟରେ ପଚାରିଲେ । ସେମାନଙ୍କ ସଙ୍ଗରେ ଥାଏ ବଡ଼ ବଡ଼ ଟ୍ରଙ୍କ, ଷ୍ଟୋଭ୍, ପାଣିର ଜଗ, କେଟଲି, କପ୍ ପିଆଲା ଆଦି ଚା ତିଆରି ପାଇଁ ଯାବତୀୟ ଉପକରଣ । ଭୋର ଚାରିଟା ବେଳେ ଆମେ ବାହାରିବା ପୂର୍ବରୁ ଚା ତିଆରି କରି ଆମକୁ ଯାଚିଲେ । ଆମେ ତାଙ୍କର ଏ କାରବାର ଦେଖି ମନେ କଲୁ ଏତେ ଗୁଡ଼ାଏ ଜିନିଷପତ୍ର ସଙ୍ଗରେ ନେଇ ଏମାନେ କିପରି ଦୁଇ ତୀର୍ଥ ବୁଲିବେ । ମୁଁ ଆମ ବନ୍ଧୁମାନଙ୍କୁ ଜନାନ୍ତିକେ କହିଲି, "ଏମାନେ କେଦାରନାଥ ଯିବାକୁ ପିକ୍‌ନିକ୍ ବୋଲି ଭାବୁଛନ୍ତି କି ?" ମୋର ବନ୍ଧୁମାନେ ଶୁଣି ହସିଲେ ।

ଏଟା ହସିବାର କଥା ନୁହେ । ଉଚ୍ଚ ପର୍ବତ ଉପରେ ବ୍ୟସନ ଧନବାନ୍‌ମାନେ କରି ପାରନ୍ତି, ଯଥେଷ୍ଟ ସଂଖ୍ୟକ କୁଲି ସଙ୍ଗରେ ଥିଲେ । ଏବେ ଏଭରେଷ୍ଟ ବିଜେତା ସାର୍ ଏଡମଣ୍ଡ୍ ହିଲାରି ନେପାଳ ଅଞ୍ଚଳରେ ଘୃଣିତ ତୁଷାରମାନବ 'ୟେତି'ର ସନ୍ଧାନରେ ବାହାରିଛନ୍ତି ଓ ତାଙ୍କର ଭ୍ରମଣ ବୃତ୍ତାନ୍ତ 'ଷ୍ଟେଟ୍‌ସ୍‌ମେନ୍‌ରେ' ଧାରା ବାହିକ ଭାବେ ପ୍ରକାଶିତ ହୋଇଛି । ସେଥିରୁ ଜଣାଯାଏ ସେ ପର୍ବତ ଭ୍ରମଣ ବେଳେ ଖାଇବା ପାଇଁ ସେ ଅଷ୍ଟ୍ରେଲିଆରୁ ନିଜ ଦୋକାନରୁ ସୁସ୍ୱାଦୁ ସେଉ ଚଟଣୀ ମଧ୍ୟ ନେଇଛନ୍ତି ।

ତେର ତାରିଖ ସକାଳେ ହରିଦ୍ୱାରରୁ ବାହାରି ଆମେ ଛବିଶ ତାରିଖ ଅପରାହ୍ଣ ସୁଦ୍ଧା ହରିଦ୍ୱାରକୁ ଫେରି ଅସିଲୁ । ଉଭୟ ତୀର୍ଥଯାତ୍ରା ପାଇଁ ପ୍ରାୟ କୋଡ଼ିଏ ଦିନ ସମୟ ଦେଲେ ଯଥେଷ୍ଟ ବିଶ୍ରାମ ମିଳିଥାଏ ଓ କୌଣସି ଦିନ ବିଶେଷ ଆୟାସ ସ୍ୱୀକାର କରିବାକୁ ହୁଏ ନାହିଁ । ଆମେ ଅଳ୍ପ ଦିନରେ ଉଭୟ ଯାତ୍ରା ଶେଷ କରି ଫେରିବାକୁ ଚାହୁଁ

ଥିବାରୁ ଆମର ଦୈନିକ ଯାତ୍ରା ପ୍ରଥ ସାଧାରଣତଃ ଅଧିକ କ୍ଲାନ୍ତିଜନକ ହୋଇଥିଲା ।

ଏ ଯାତ୍ରା ଥିଲା ଆମ ପକ୍ଷରେ ଏକ ଅବିସ୍ମରଣୀୟ ଅଭିଜ୍ଞତା । ନିଜର ଶାରୀରିକ ଶକ୍ତି ସାମର୍ଥ୍ୟରେ ମୋର ବିଶ୍ୱାସ ଗତ ଦୁଇବର୍ଷ ମଧ୍ୟରେ ଯଥେଷ୍ଟ ପରିମାଣରେ କମି ଯାଇଥିଲା, ସାମାନ୍ୟ ସାମାନ୍ୟ ଅଥଚ କ୍ରମାଗତ ସ୍ୱାସ୍ଥ୍ୟହାନି ଯୋଗୁ । ଏହି କେତେ ଦିନର ପରିଶ୍ରମରେ ମୁଁ ସେହି ଆତ୍ମବିଶ୍ୱାସ ଫେରି ପାଇଲି ।

ହରିଦ୍ୱାରରୁ ଦିଲ୍ଲୀ ଫେରି ମୁଁ ସଙ୍ଗେସଙ୍ଗେ କଲିକତା ବାଟେ ଘରକୁ ଫେରିଲି । କଲିକତାରେ ନିଜର ଓଜନ ନେଲି । ମୋର ଦୃଢ଼ ବିଶ୍ୱାସଥିଲା ଯେ ଏ ଦୁଇ ତୀର୍ଥ ଯାତ୍ରା ଫଳରେ ମୋର ଦେହର ଓ ପାପର ଭାର ଯଥେଷ୍ଟ କମିଯାଇଥିବ, କିନ୍ତୁ ଦେହର ଓଜନ ନେବାରୁ ଦେଖିଲି ଯେ ଓଜନ କେବଳ ଦୁଇସେର କମିଛି । ମୁଁ ଦମି ଗଲି, କିନ୍ତୁ ଆଶ୍ୱସ୍ତ ହେଲି ଯେ ପାପର ଓଜନ ମାପିବାର ଯନ୍ତ୍ର ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ ।

( ଅକ୍ଟୋବର-୧୯୬୮ )

---

# କାଶ୍ମୀର ଓ ଅମରନାଥ ଯାତ୍ରା

## ( ଏକ )

ଗତ ବର୍ଷ କେତେଜଣ ବନ୍ଧୁଙ୍କ ସହିତ କେଦାରନାଥ ଓ ବଦ୍ରୀନାଥ ଯାତ୍ରାପରେ ହିମାଳୟର ଅତୁଳନୀୟ ଶୋଭା ମୋ ମନରେ ଏକ ଅବିସ୍ମରଣୀୟ ପ୍ରଭାବ ସୃଷ୍ଟି କରିଥିଲା । ଏ ବର୍ଷ ତେଣୁ କାଶ୍ମୀର ଓ ଅମରନାଥ ଯାତ୍ରାର ସୁଯୋଗ ମିଳିବାରୁ ମୁଁ ସେ ପ୍ରଲୋଭନ ଏଡ଼ାଇ ପାରିଲି ନାହିଁ । ପ୍ରତିବର୍ଷ ଶ୍ରାବଣ ପୂର୍ଣ୍ଣିମୀ ଦିନ ବହୁ ସଂଖ୍ୟକ ଯାତ୍ରୀ ଅମରନାଥ ଦର୍ଶନ ପାଇଁ ଯାଆନ୍ତି । ଏ ବର୍ଷ ପ୍ରାୟ ବାର ହଜାର ଯାତ୍ରୀ ସେହି ତୀର୍ଥକୁ ଯାତ୍ରା ପାଇଁ ବାହାରୁ ଥିବାରୁ ଓ ପାର୍ଲିଆମେଣ୍ଟର ସଭ୍ୟ କଳାହାଣ୍ଡି ମହାରାଜା ମହାଶୟବାରେ, ଶ୍ରୀ ବିଜୟଚନ୍ଦ୍ର ପ୍ରଧାନ ଓ ଶ୍ରୀ ବୈରାଗୀ ଦ୍ୱିବେଦୀ ମଧ୍ୟ ସେହି ତୀର୍ଥଯାତ୍ରା ଉଦ୍ଦେଶ୍ୟରେ ବାହାରିବାରୁ ମୁଁ ମଧ୍ୟ ସେମାନଙ୍କର ସହଗାମୀ ହେଲି । ଆମ ସଙ୍ଗରେ କଳାହାଣ୍ଡିର ବିଶିଷ୍ଟ କର୍ମୀ ଶ୍ରୀ ରଘୁନାଥ ପ୍ରହରାଜ ମଧ୍ୟ ଗଲେ ।

କାଶ୍ମୀର ବା ଅମରନାଥ ଯାତ୍ରା ପାଇଁ ପୂର୍ବେ କାଶ୍ମୀର ସରକାରଙ୍କଠାରୁ ସ୍ୱତନ୍ତ୍ର ଅନୁମତି ପତ୍ର ଦରକାର ପଡ଼ୁଥିଲା ଏବଂ ସ୍ୱର୍ଗତ ଶ୍ୟାମାପ୍ରସାଦ ମୁଖାର୍ଜି ଗୋଟିଏ ଦେଶ ମଧ୍ୟରେ ଅନୁମତି ପତ୍ରର ପ୍ରୟୋଜନୀୟତା ବିରୁଦ୍ଧରେ ପ୍ରତିବାଦ କରି ୧୯୫୩ ସାଲରେ ବିନା-ଅନୁମତି ପତ୍ରରେ ଭାରତରୁ କାଶ୍ମୀରକୁ ଯାଉଥିଲେ ବୋଲି ତାଙ୍କୁ ବନ୍ଦୀ କରାଯାଇଥିଲା ଏବଂ ସେହି ଅଟକବନ୍ଦୀ ଅବସ୍ଥାରେ ତାଙ୍କର ଅକାଳ-ବିୟୋଗ ଘଟିଲା । ବିଗତ ବର୍ଷଠାରୁ ଭାରତବର୍ଷରୁ କାଶ୍ମୀର ଯିବାକୁ ହେଲେ ଆଉ ଅନୁମତି ପତ୍ର ଦରକାର ପଡ଼ୁନାହିଁ ।

୧୯୬୧ ଅଗଷ୍ଟ ଷୋହଳ ତାରିଖ ସନ୍ଧ୍ୟାରେ ଆମେ ଦିଲ୍ଲୀ ଛାଡ଼ିଲୁ ପଠାନକୋଟ ଅଭିମୁଖେ । କିନ୍ତୁ ମୂଳରୁ ବିଘ୍ନ । ବାଟରେ ପର୍ବତ

ଖସି ରେଲଲାଇନ ଖରାପ ହୋଇଥିବା ଯୋଗୁଁ ଆମ ଟ୍ରେନ୍ ସିଧା ରାସ୍ତାରେ ନ ଯାଇ ଅମୃତସର ବାଟେ ପଠାନକୋଟ ପହଞ୍ଚିଲା ନିର୍ଦ୍ଦିଷ୍ଟ ସମୟର ପ୍ରାୟ ଚଉଦଘଣ୍ଟା ପରେ । ନିର୍ଦ୍ଦିଷ୍ଟ ସମୟରେ ପହଞ୍ଚିଥିଲେ ଆମେ ହୁଏତ ସେହି ଦିନ ରାତିରେ ବସ୍‌ରେ ଶ୍ରୀନଗର ପହଞ୍ଚି ପାରିଥାନ୍ତୁ ।

ପଠାନକୋଟ ପଞ୍ଜାବର ଗୁରୁଦାସପୁର ଜିଲ୍ଲାର ଏକ ବଡ଼ ସହର । କାଶ୍ମୀରକୁ ଯିବା ପାଇଁ ଏହା ହେଉଛି ଶେଷ ରେଲଷ୍ଟେସନ । ପୂର୍ବେ ପାକିସ୍ଥାନ ଗଢ଼ା ହେବା ପୂର୍ବରୁ ସିଆଲକୋଟ୍ ହୋଇ ଜମ୍ମୁ ପର୍ଯ୍ୟନ୍ତ ରେଲରାସ୍ତା ଥିଲା । ମାତ୍ର ଭାରତ ବିଭାଜନ ପରେ ସାରା କାଶ୍ମୀରରେ ଆଜି ମୋଟେ ରେଲପଥ ନାହିଁ ।

ପଠାନକୋଟରୁ ପ୍ରତିଦିନ ଥରେ ଉଡ଼ାଜାହାଜ ଶ୍ରୀନଗରକୁ ଯାଏ ଓ ବସ୍ ଅନେକ ଯାଏ । ଆମେ ପଠାନକୋଟ୍‌ରେ ଖିଆପିଆ ସାରି ପ୍ରାୟ ବାରଟାରେ ଶ୍ରୀନଗର ଅଭିମୁଖେ ବସ୍‌ରେ ଯାତ୍ରାକଲୁ ।

ପଠାନ କୋଟରୁ ଜମ୍ମୁ ସତଷଠି ମାଇଲ । ରାସ୍ତାରେ ଅନେକ ସ୍ଥାନରେ ସୈନ୍ୟ ଛାଉଣୀମାନ ଅଛି । ଏ ଅଞ୍ଚଳର ଡୋଗରମାନେ ଯୁଦ୍ଧ ବିଦ୍ୟାରେ ବିଖ୍ୟାତ । ଏ ଅଞ୍ଚଳର ପଥ ଏତେ ଦୁର୍ଗମ ନୁହେଁ ।

କାଶ୍ମୀରଠାରେ ଜମ୍ମୁ ତାର ସ୍ୱାତନ୍ତ୍ର୍ୟ ବଜାୟ ରଖିଛି । ରାଜ୍ୟର ନାମ ହେଉଛି ଜମ୍ମୁ ଓ କାଶ୍ମୀର । ଜମ୍ମୁ ଅଞ୍ଚଳର ପ୍ରାୟ ସମସ୍ତେ ହିନ୍ଦୁ, କାଶ୍ମୀର ଅଞ୍ଚଳରେ ପ୍ରାୟ ସମସ୍ତେ ମୁସଲମାନ ଓ ଓ ଲଦାଖ ଅଞ୍ଚଳର ପ୍ରାୟ ସମସ୍ତେ ବୌଦ୍ଧ । କିନ୍ତୁ ଜମ୍ମୁ ଓ କାଶ୍ମୀର ରାଜ୍ୟର ମୋଟାମୋଟି ହିସାବ କଲେ ପ୍ରାୟ ଶତକଡ଼ା ଅଶିଏ ହେଉଛନ୍ତି ମୁସଲମାନ । କାରଣ ଜମ୍ମୁ ଓ କାଶ୍ମୀର ରାଜ୍ୟରେ କାଶ୍ମୀର ଉପତ୍ୟକାହିଁ ହେଉଛି ଜନ ବହୁଳ ଅଞ୍ଚଳ ।

ଜମ୍ମୁ ସହରରେ ପହଞ୍ଚିଲୁ ଆମେ ପ୍ରାୟ ଦୁଇଟା ସମୟରେ । ସହରଟି ବେଶ୍ ବଡ଼ । ଲୋକ ସଂଖ୍ୟା ଆନୁମାନିକ ତିରିଶ ହଜାରରୁ ଅଧିକ ହେବ । ଏଠାରେ ଅନେକ ହୋଟେଲ, ଜଳଖିଆ ଦୋକାନ ଓ ଫଳଦୋକାନ ଅଛି । ଏଠାରେ ରଘୁନାଥ ମନ୍ଦିର ପ୍ରସିଦ୍ଧ । ପୂର୍ବବର୍ଷ ଆମେ ଯେପରି କେଦାରନାଥ ଓ ବଦ୍ରୀନାଥ ଯାତ୍ରାକାଳରେ ହରିଦ୍ୱାର

ଓ ଅଳକନନ୍ଦାର ସଙ୍ଗମ ସ୍ଥଳରେ ରଘୁନାଥ ମନ୍ଦିର ଦେଖିଥିଲୁ, ସେହିପରି କାଶ୍ମୀରର ଜମ୍ମୁ ଓ ଶ୍ରୀନଗର ଉଭୟସ୍ଥାନରେ ରଘୁନାଥଙ୍କ ଦେଉଳମାନ ଆରାଧ୍ୟ ଦେବତା—ଡୋଗ୍ରା ବଂଶୀୟ ମହାରାଜାଙ୍କ ଦ୍ୱାରା ପ୍ରତିଷ୍ଠିତ ।

ଆମେ ଜମ୍ମୁରୁ ବାହାରିଲୁ ପ୍ରାୟ ସକାଳ ୫ଟା ବେଳେ । ଜମ୍ମୁଠାରୁ ରାସ୍ତା ଧୀରେ ଧୀରେ ପାର୍ବତ୍ୟ ପଥରେ ଯାଇଛି । ଏକ ଅପରେଶନ୍ତା ଖରସ୍ରୋତା ନଦୀ କୂଳରେ ବଙ୍କାଇ ବଙ୍କାଇ ଚାଲିଥାଏ ଆମର ରାସ୍ତା । କେଉଁଠି ଗୋଟିଏ ଝରଣା ଆସି ସେହି ନଦୀରେ ମିଶିଛି; ସେଠାରେ ବଡ଼ ବଡ଼ ପଥର ଉପରେ ରାସ୍ତା ପାର ହେବା ବର୍ଷ ପକ୍ଷରେ ବେଶ ଅତି କଷ୍ଟକର ହେଉ । ଆମେ ଜମ୍ମୁ ସହରରେ ଥିବା ବେଳେ ଅମରାଏ ବର୍ଷା ହୋଇ ଯାଇଥିଲା । ବର୍ଷା ପରେ ଆକାଶ ନିର୍ମଳ ଓ ମେଘମୁକ୍ତ ହୋଇ ଆସିଲା ସମୟରେ ଠିକ୍ ସେହି ଗିରିନଦୀର ଦୁଇପାଖର ପର୍ବତ ଉପରେ ଦୁଇକୋଟିର ଭାର ଦେଇ ଇନ୍ଦ୍ରଧନୁର ତୋରଣ ଆମକୁ କାଶ୍ମୀରକୁ ସ୍ୱାଗତ କଲାପରି ଜଣାପଡ଼ୁଥାଏ । ବର୍ଷାରେ ସଦ୍ୟସ୍ନାତା ପ୍ରକୃତି ସେହି ତୋରଣରେ ସେଆଡ଼େ ନାନା ବର୍ଣ୍ଣର ଏକ ସୁନ୍ଦର ଇନ୍ଦ୍ରଜାଲ ସୃଷ୍ଟି କରୁଥାଏ । ଯାତ୍ରାର ପ୍ରଥମରୁ ଏ ପ୍ରକାର ସମ୍ବର୍ଦ୍ଧନା ପାଇ ମୁଁ ମୁଗ୍ଧ ହୋଇଥିଲି ।

ପର୍ବତ ଉପରେ ରାସ୍ତାର ଦୁଇଆଡ଼େ ଦେବଦାରୁ ଜାତୀୟ ଉଚ୍ଚ ବୃକ୍ଷମାନ ପ୍ରାୟ ସମାନ୍ତରାଳ ଭାବରେ ସଜା ହେଲା ପରି ଦେଖା ଯାଉଥାଏ । ସନ୍ଧ୍ୟା ହେବା ପୂର୍ବରୁ ଆମ ବସ୍‌ଟି ରାସ୍ତା ଉପରେ ଥିବା ମେଘଖଣ୍ଡ ଭିତରେ ପଶିଗଲା ପରି ମନେ ହେଲା ଓ ଚାରିଆଡ଼େ କୁହୁଡ଼ିଆ ଦେଖାଗଲା । ଚାରିଘଣ୍ଟା ମଧ୍ୟରେ ଆମେ ସମୁଦ୍ର ପତ୍ତନଠାରୁ ପ୍ରାୟ ବାର ଶହ ଫୁଟ ଉଚ୍ଚରୁ ସାତହଜାର ଫୁଟ ଉଚ୍ଚକୁ ଉଠିଗଲୁ । କେଦାରନାଥ ବଦ୍ରୀନାଥ ରାସ୍ତାରେ ଯେପରି ବସ୍ ଗୋଟିଏ ଆଡ଼ୁ ଆସୁଥିଲେ, ଅନ୍ୟଆଡ଼ୁ ବସ ବା ମୋଟର ଗାଡ଼ି ଛଡ଼ା ଯାଏ ନାହିଁ; ଏ ଅଞ୍ଚଳରେ ସେମିତି କଟକଣା ନାହିଁ । କାରଣ ଏ ଅଞ୍ଚଳରେ ପର୍ବତ ମଝିରେ ରାସ୍ତା ଟିକଏ ଚଉଡ଼ା ଥାଏ ଓ ସେଠାରେ ଦୁଇଟି ଗାଡ଼ି ପରସ୍ପରକୁ ଅତିକ୍ରମ କରିବାର ସୁବିଧା ଥାଏ । ଆମେ ରାତି ଆଠଟା ପରେ ବାଟୋଟ୍ ବୋଲି ଗୋଟିଏ ଗାଁରେ ପହଞ୍ଚି ଗୋଟିଏ ଦୋକାନରେ

ରାତକ ପାଇଁ ଆଶ୍ରୟ ନେଲୁ । ଅନେକ ବିଦେଶୀ ଯାତ୍ରୀ ଏ ରାସ୍ତାରେ ଯିବା ଆସିବା କରୁଥିବାରୁ ଶ୍ରେଷ୍ଠ ହୋଟେଲମାନଙ୍କରେ ବିଲାତି ମଦର ବିଜ୍ଞାପନ ଦିଆଯାଇଥାଏ ।

ଆମେ ତହିଁ ଆର ଦିନ ସକାଳୁ ଉଠି ବାହାରିଲୁ । ପୂର୍ବଦିନ ରାତିରେ ବର୍ଷା ହୋଇଥିବାରୁ ବାଟରେ କେତେଠାରେ ରାସ୍ତା ଖରାପ ହୋଇ ମରାମତି ହେଉଥିଲା ଓ ସେ ରାସ୍ତାରେ ଆମର ବସ ଅତି ସାବଧାନତାର ସହିତ ଅଗ୍ରସର ହେଉଥିଲା । ଏ ଅଞ୍ଚଳରେ ରାସ୍ତାର ଗୋଟିଏ ଦିଗରେ ଉତ୍ତୁଙ୍ଗ ପର୍ବତ ଶିଖରକୁ ଆଖି ପାଏ ନାହିଁ, ଅନ୍ୟ ଦିଗରେ ଅତଳ ପାତାଳ ତଳେ ନବଯୌବନ ଭରା ଉଚ୍ଛ୍ୱସିତ ଗିରିନଦୀ ଓ ନଦୀର ସେ ଆଡ଼େ ପୁଣି ଅଭ୍ରଭେଦୀ ପର୍ବତ ନୀଳମେଘ ସଙ୍ଗେ ଲୁଚକାଳି ଖେଳୁଛି । ପାଇନ୍ ଝାଉଁ ବୃକ୍ଷରାଜି ମଧ୍ୟରେ କେଉଁଠି ଶ୍ୟାମଳ ଧାନକ୍ଷେତମାନ, କେଉଁଠି ସେଉ ଗଛରୁ ଲୁଚି ଲୁଚି ଚାହିଁଛି ଶାଗୁଆ ଓ ହଳଦିଆ ସେଉ ଫଳମାନ । ଏ ଅଞ୍ଚଳରେ ସେଉଫଳ ଆମ ଓଡ଼ିଶାର ବରକୋଳି ଫଳପରି ସୁଲଭ । ଅଜଣା ନଦୀର କୂଳେ କୂଳେ କୂଳଠାରୁ ବହୁ ଉଚ୍ଚରେ ଚାଲିଥାଏ ଆମର ଗାଡ଼ି । କେଉଁଠି ତଳକୁ ଚାହିଁଲେ ବ୍ୟୋମଯାନରୁ ଚାହିଁଲା ପରି ଦେଖାଯାଏ ବିଭିନ୍ନ ଆୟତନ ଓ ଆକୃତିର ଶସ୍ୟକ୍ଷେତ୍ର ମଝିରେ ଖଣ୍ଡିଏ ଖଣ୍ଡିଏ ଛୋଟ ଗାଁ ।

ରାସ୍ତା ଖରାପ ଥିବା'ରୁ ଆମେ ବନିହାଲରେ ପହଞ୍ଚିଲୁ ପ୍ରାୟ ଦଶଟା ସମୟରେ । ଏଠାରେ ଅଳ୍ପ କେତେବର୍ଷ ତଳେ ପର୍ବତ ମଝିରେ ଗୋଟିଏ ସୁଡ଼ଙ୍ଗରେ ରାସ୍ତା କରାଯାଇଛି । ଏହାକୁ ଜବାହର ଟନେଲ୍ କୁହାଯାଏ । ଏହା ଏକ ମାଇଲରୁ କିଛି ଅଧିକ ଲମ୍ବ । ଏହା ଦିନବେଳେ ସୁଦ୍ଧା ବିଜୁଳି ବତୀରେ ଆଲୋକିତ ଥାଏ । ଯିବା ଓ ଆସିବା ପାଇଁ ଅଲଗା ଅଲଗା ରାସ୍ତା ଅଛି । ଏହି ଟନେଲ୍ ଯୋଗୁ ରାସ୍ତା ଅଠର ମାଇଲ କମ୍ ପଡ଼ୁଛି ବୋଲି ଆମେ ବୁଝିଲୁ ।

ଜବାହର୍ ଟନେଲ୍ ପାରହେବାର ଅଳ୍ପ କେତେ ମାଇଲ ପରେ ପର୍ବତ ରାସ୍ତା ସରି ଆସେ ଓ ସାମନାରେ କାଶ୍ମୀରର ବିସ୍ତୃତ ସମତଳପ୍ରାୟ ଉପତ୍ୟକା ପର୍ବତ ପ୍ରାଚୀର ବେଷ୍ଟିତ ହେଲାପରି ଦେଖାଯାଏ । ପାର୍ବତ୍ୟ ପଥରୁ ସମ୍ମୁଖରେ ବିସ୍ତୃତ ଶସ୍ୟଶ୍ୟାମଳ

ଉପତ୍ୟକା ଯେଉଁଠି ଚନ୍ଦ୍ରବାଳ ନୀଳ ପର୍ବତ ସଙ୍ଗେ ମିଶେ ଓ ନୀଳ ପର୍ବତମାଳା ମଳିନ ମେଘମାଳା ସଙ୍ଗରେ ମିଶିଯାଏ ଓ ମେଘ ନୀଳ ଆକାଶରେ ମିଶେ । ପଛରେ ଉତ୍ତୁଙ୍ଗ ପର୍ବତମାଳା ଓ ସମ୍ମୁଖରେ ବିସ୍ତୀର୍ଣ୍ଣ ଉପତ୍ୟକା ମଧ୍ୟରେ ଷୁଦ୍ରକୀଟ ପରି ଚାଲିଥାଏ ଆମର ଗାଡ଼ି । ଶ୍ରୀନଗରକୁ ଯିବା ବାଟରୁ ଅନ୍ୟ ରାସ୍ତା ଦେଇ ପ୍ରାୟ ପାଞ୍ଚମାଇଲ ଦୂରରେ ଥିବା ଭେରିନାଗକୁ ଆମେ ଗଲୁ । ଭେରିନାଗ ଝେଲମ୍ ନଦୀର ଉତ୍ପତ୍ତି ସ୍ଥଳ । ଏ ନଦୀକୁ ପୂର୍ବେ ବିତସ୍ତା ବା ନୀଳନାଗ ବୋଲି କୁହାଯାଉଥିଲା । ଯେଉଁ ଝରଣାରୁ ବିତସ୍ତାର ଉତ୍ପତ୍ତି, ସେଠାରେ ଜାହାଙ୍ଗିର ୧୯୧୨ ଖ୍ରୀଷ୍ଟାବ୍ଦରେ ଗୋଟିଏ ମୋଗଲ ଉଦ୍ୟାନ ଓ ବିଶ୍ରାମ ଗୃହ ନିର୍ମାଣ କରାଇଥିଲେ । ଏହି ବିଶ୍ରାମ ଗୃହଟି ଅଷ୍ଟ କୋଣାକାର ଓ ମଧ୍ୟରେ ଗୋଟିଏ ଜଳାଶୟ ଅଛି ଯେଉଁଠାରୁ ଝେଲମ୍‌ର ସ୍ୱଚ୍ଛ ନୀଳ ଜଳ ସ୍ରୋତ ଆକାରରେ ପ୍ରବାହିତ ହୋଇଯାଉଛି ।

ଆଜଠାରୁ ପ୍ରାୟ ସାଢ଼େ ତିନିଶହ ବର୍ଷ ପୂର୍ବେ ଏହିଠାରେ ଗ୍ରୀଷ୍ମକାଳରେ ଜାହାଙ୍ଗୀର ବାଦଶାହ ଶିରାଜୀ ମଦିରାର ପାନପାତ୍ରରେ ବିତସ୍ତାର ଘନନୀଳ ଜଳ ଓ ନୂରଜାହାନଙ୍କର ମଦିର ଆଖିର ପ୍ରତିଫଳନ ଦେଖି ବିଭୋର ହେଉଥିଲେ । ଧ୍ୱଏତ ନିର୍ଝରର କଳରୋଳ ସଙ୍ଗେ କେତେ ଗାୟିକାଙ୍କର କଣ୍ଠସ୍ୱର, କେତେ ନର୍ତ୍ତକୀଙ୍କର ଲାସ୍ୟଛନ୍ଦ ଓ କେତେ ସୁନ୍ଦରୀଙ୍କର ମୃଦୁ ହାସ୍ୟ ତାଳ ଦେଉଥିବ ଓ ଏହିଠାରେ ଶିରାଜୀ ସୁନ୍ଦରୀ, ସୁମନ ଓ ସରିତର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଜାହାଙ୍ଗୀର ଧ୍ୱଏତ•ମାତାଲ କଣ୍ଠରେ ଦିନେ ଗାଇଥିଲେ:—

ଅଗର୍ ଫିର୍‌ଦୌସ୍ ବର୍ ରୁଇ ଜମିନ୍ ଅସ୍
ହମିନ୍ ଅସ୍ତ୍ ଓ ହମିନ୍ ଅସ୍ତ ଓ ହମିନ୍ ଅସ୍ତ୍ ।

(ଯଦି ଏ ପୃଥିବୀରେ କେଉଁଠି ସ୍ୱର୍ଗ ଅଛି, ତେବେ ତାହା ଏଇଠାରେ, ତାହା ଏଇଠାରେ, ତାହା ଏଇଠାରେ) ।

ଆମେ ସେଠାରେ ପହଞ୍ଚିଲା ବେଳେ ବିଶ୍ରାମଗୃହ ପ୍ରାଙ୍ଗଣରେ ଥିବା ଜଳାଶୟରେ ବହୁ ମତ୍ସ୍ୟ ଜଳକେଳି କରୁଥିଲେ ଓ ମୋର ମନେ ହେଲା ସେହି ସମୟରେ ଗୋଟିଏ ଚଞ୍ଚଳଗତି ମତ୍ସ୍ୟ ତାର ସ୍ଫଟିକ ନୟନା ପ୍ରେୟସୀକୁ ଲକ୍ଷ୍ୟ କରି ଗାଉଥିଲା ସେହି ବାଦଶାହୀ ମର୍ତ୍ତ୍ୟରେ-ସ୍ୱର୍ଗର-ସ୍ୱପ୍ନଗୀତ ।

ଉଦ୍ୟାନରେ ଏକ ପକ୍କା ପଥରର ନାଲ ଦେଇ ବହି ଯାଇଛି ଝରଣା, ସୁପାଳିତ ଶିଶୁର ଜୀବନ ପରି । ନାଲ ବନ୍ଧର ଦୁଇପଟେ ବିବିଧ ବର୍ଣ୍ଣର ପୁଷ୍ପରାଜି ଓ ବିସ୍ତୀର୍ଣ୍ଣ ଘାସର ସମତଳ ଗାଲିଚା । ବିନାର ଗଛର ଛାଇରେ ଏଇ ଗାଲିଚାରେ ବସି ଫୁଲର ବର୍ଣ୍ଣ ଓ ଗନ୍ଧରେ, ଝରଣାର କଳ କଳ ନାଦରେ ମନ, ସ୍ୱପ୍ନବିଭୋର ହୋଇ ସେହି ମୋଗଲ ଯୁଗର ଐଶ୍ୱର୍ଯ୍ୟ ଓ ବିଭୂତିରେ ନିଜକୁ ସମୃଦ୍ଧ କରୁଥିଲା । ଏହି ସମୟରେ ବସ୍‌ର ହର୍ନ ଶବ୍ଦ ଶୁଣି ଅନନ୍ତରୁ ବର୍ତ୍ତମାନ କାଳକୁ ଫେରିଆସି ବସରେ ନିଜ ନିଜ ଆସନ ଦଖଲ କରିବା ପାଇଁ ଧାଇଁଲୁ ।

ଭେରିନାଗଠାରୁ ଶ୍ରୀନଗର ତେପନ ମାଇଲ । ରାସ୍ତାରେ ଆଉ ଗୋଟିଏ ଦର୍ଶନୀୟ ସ୍ଥାନ ହେଉଛି ଅବନ୍ତୀପୁର । ଖ୍ରୀଷ୍ଟୀୟ ନବମ ଶତାବ୍ଦୀରେ ରାଜତ୍ୱ କରୁଥିବା ଅବନ୍ତୀବର୍ମା ଏଠାରେ ଦୁଇଟି ମହାଦେବ ମନ୍ଦିର ନିର୍ମାଣ କରିଥିଲେ । ସେହି ବିରାଟ ମନ୍ଦିରମାନଙ୍କର ଭଗ୍ନାବଶେଷ ଏବେ ସୁଦ୍ଧା ସେ ସମୟର କଳା ଓ ସ୍ଥାପତ୍ୟର ପରିଚୟ ଦିଏ । ଓଡ଼ିଶାର ମନ୍ଦିରମାନଙ୍କରେ ଥିବା ପ୍ରସ୍ତର ଶିଳ୍ପ ପରି ଏଠାରେ ଶିଳ୍ପକଳା ମଧ୍ୟ ପ୍ରଶଂସନୀୟ ।

ଶ୍ରୀନଗର ପାଖରେ ପ୍ରାକୃତିକ ଦୃଶ୍ୟ ଅତିରମଣୀୟ । ଏଠାରେ ଶ୍ରାବଣ ମାସରେ ସୁଦ୍ଧା ଧାନ ପାଚି ଯାଇଥିଲା । ଉଭୟ ଦିଗରେ ବହୁଦୂରବ୍ୟାପୀ ସମତଳ ପ୍ରାୟ ଧାନକ୍ଷେତମାନ ଦେଖା ଯାଉଥିଲା । ସରଳ ପଥର ଉଭୟ ପାର୍ଶ୍ୱରେ ବହୁଦୂରବ୍ୟାପୀ ସମାନ୍ତରାଳ ପ୍ରାୟ ଦେବଦାରୁ ଜାତୀୟ ବୃକ୍ଷମାନଙ୍କର ଛାୟା ଆମମାନଙ୍କୁ ସ୍ୱାଗତ କଲା ପରି ଜଣା ପଡ଼ୁଥାଏ । ଆତିମ ବାଟରେ ମଧ୍ୟାହ୍ନ ଭୋଜନ ପାଇଁ କିଛି ସମୟ ନେଇ ଶ୍ରୀନଗରରେ ପହଞ୍ଚିଲୁ ଅପରାହ୍ନ ଚାରିଟା ପ୍ରାୟ ଭିତରେ ।

( ଦୁଇ )

କାଶ୍ମୀରରେ ପର୍ଯ୍ୟଟକମାନଙ୍କର ସୁବିଧା ଓ ସ୍ୱାଚ୍ଛନ୍ଦ୍ୟ ପାଇଁ ପର୍ଯ୍ୟାପ୍ତ ବ୍ୟବସ୍ଥା ରହିଛି । ଭାରତର ଅନ୍ୟାନ୍ୟ ରାଜ୍ୟ ତୁଳନାରେ କାଶ୍ମୀରକୁ ଯାଉଥିବା ପର୍ଯ୍ୟଟକ; ବିଶେଷତଃ ବିଦେଶୀ ପର୍ଯ୍ୟଟକମାନଙ୍କ ସଂଖ୍ୟା ବୋଧହୁଏ ଅଧିକ ଓ ବିଦେଶୀ ପର୍ଯ୍ୟଟକମାନଙ୍କର ଯାତାୟାତ ଯୋଗୁଁ କାଶ୍ମୀର ସରକାରଙ୍କ ଟୁରିଷ୍ଟ ବିଭାଗରୁ ବିଶେଷ ଆୟ ହୁଏ ।



ଡାଲ ହ୍ରଦର ଦୁଇଟି ଡଙ୍ଗାଘର

ଶ୍ରୀନଗରରେ କାଶ୍ମୀର ସରକାରଙ୍କ ବଗାଟ ଟୁରିଷ୍ଟ ଅଫିସ ଅଛି ଓ ସେଠାରେ ଯାତ୍ରୀମାନଙ୍କର ସୁବିଧା ପାଇଁ ବିଶେଷ ଦୃଷ୍ଟି ଦିଆଯାଏ । ଭିନ୍ନ ଦର୍ଶନୀୟ ସ୍ଥାନ ପାଇଁ ବସ୍‌ମାନ ଏହି ଅଫିସରୁ ଛୁଟନ୍ତି ଓ ଏଠାରେ ସେଥିପାଇଁ ଟିକଟ୍ ଓ ସ୍ଥାନ ରିଜର୍ଭ କରାଯାଏ । ଏ ଅଫିସ ସଙ୍ଗେ ଉଡାଜାହାଜ ଅଫିସ୍, ମାଛମରା ଓ ଶିକାର ଲାଇସେନ୍‌ସ ଅଫିସ୍ ମଧ୍ୟ ଅଛି । ଏଠାରେ ହୋଟେଲ ବା ଡଙ୍ଗାଘର (house boat)ରେ ରହିବାର ବ୍ୟବସ୍ଥା ମଧ୍ୟ କରାଯାଏ । ଏହି ଅଫିସକୁ ଲାଗି ବଡଗୋଟି ୱେଟିଙ୍ଗ୍ ରୁମ୍ ବା ବିଶ୍ରାମକକ୍ଷ ଥିବା ଗୋଟିଏ କୋଠା ଓ ଭୋଜନାଳୟ ଅଛି । ଅବଶ୍ୟ ଏହି ସରକାରୀ ବିଶ୍ରାମାଳୟରେ ଏକା ଥରକେ ଚବିଶ ଘଣ୍ଟାରୁ ଅଧିକ ସମୟ ରହିବାକୁ ସାଧାରଣତଃ ଅନୁମତି ଦିଆଯାଏ ନାହିଁ ।

ଆମେ ଶ୍ରୀନଗରରେ ଦିନ ଗୁଡିଏ ବେଳେ ପହଞ୍ଚି 'ନୂଆ ତାଜ' ନାମକ ଗୋଟିଏ ଡଙ୍ଗା ଘରରେ ରହିବାକୁ ଗଲୁ । ଯେଉଁଠି ଡାଲ୍ ଗେଟ୍ କେନାଲ ଡାଲ୍ ହ୍ରଦକୁ ଝେଲମ୍ ନଦୀ ସହିତ ସଂଯୁକ୍ତ କରିଛି ସେଠାରେ ବିସ୍ଥାପିତ ବହୁ ଆଧୁନିକ ବିଳାସ ତରଣୀ ମଧ୍ୟରୁ 'ନୂଆ ତାଜ୍' ଅନ୍ୟତମ । ଏହିପରି ବଡ ବଡ ଡଙ୍ଗାଘରେ ଦୁଇ ତିନୋଟି ଲେଖାଏଁ ଶୟନକକ୍ଷ, ଗୋଟିଏ ଭୋଜନାଗାର, ଗୋଟିଏ ଡ୍ରଇଂ ରୁମ୍ ଓ ଗୋଟିଏ ରନ୍ଧନ କକ୍ଷ ଥାଏ । ପ୍ରତ୍ୟେକ ଶୟନକକ୍ଷ ସଙ୍ଗେ ସ୍ନାନାଗାର ଥାଏ । ତଳେ ବିବିଧ ବର୍ଣ୍ଣର ଚାରୁକାର୍ଯ୍ୟ ମଣ୍ଡିତ କାଶ୍ମୀରୀ ଗାଲିଚା, ଆଧୁନିକ ପଲଙ୍କ, ଡ୍ରେସିଂ ଦର୍ପଣ, ବିଜୁଳିବତି, ଇତ୍ୟାଦି ଆଧୁନିକ ଗୃହରେ ଯାହା କିଛି ଥାଏ, ସବୁ ଏହି ବିଳାସ ତରଣୀରେ ଥାଏ । ଖାଇବା ପିଇବା ଖର୍ଚ୍ଚ ମିଶାଇ ଏଠାରେ ରହିବାର ଦୈନିକ ଖର୍ଚ୍ଚ ଆମର ପ୍ରତିଜଣ ବନ୍ଧୁଙ୍କୁ ପ୍ରାୟ ବାରଟଙ୍କା ଲେଖାଏ ପଡିଲା ।

ନୌକା ଯେଉଁଠି ଘର, ଜଳ ସେଠାରେ ରାଜପଥ । ସାନ୍ଧ୍ୟ ବିହାର ପାଇଁ ସେଠାରେ ଅନେକ ଛୋଟ ଛୋଟ, ନୌକାରେ ଲୋକେ ବୁଲିବାକୁ ବାହାରନ୍ତି ଓ ନାନା ପ୍ରକାର ପଣ୍ୟଦ୍ରବ୍ୟ, ମନୋହାରୀ ଜିନିଷମାନ ଛୋଟ ଛୋଟ ଡଙ୍ଗାରେ ଏହି ଡଙ୍ଗାଘର ପାଖକୁ ବିକିବାକୁ ଆସନ୍ତି । ଏହି ଛୋଟ ଡଙ୍ଗାକୁ 'ଶିକାରା' କହନ୍ତି । ଏ ଡଙ୍ଗାଗୁଡିକରେ ଗାଲିଚା ଆଦି ଆଦି ସଜ୍ଜିତ ହୋଇଥାଏ ଓ ଉପରେ ଛାତ ମଧ୍ୟ ଥାଏ ।

ଶ୍ରୀନଗର ସମୁଦ୍ର ପତ୍ତନଠାରୁ ହ୍ଵାବନଶହ ଫୁଟ ଉଚ୍ଚରେ ଅବସ୍ଥିତ, ଏଣୁ ଖରାଦିନରେ ଓ ବର୍ଷା ଦିନରେ ଏଠାରେ ଜଳବାୟୁ ଖୁବ୍ ଭଲ। ଶୀତ ଦିନରେ ଏଠାରେ ବରଫ ପଡ଼େ । ଶ୍ରୀନଗରରେ ଜଳବାୟୁ ଭଲ ଥିବାରୁ ଓ ଏହାର ପ୍ରାକୃତିକ ପରିବେଶ ମନୋହର ଥିବାରୁ ଏହାକୁ ବାସ୍ତବିକ ଶ୍ରୀନଗର ବୋଲି କୁହାଯାଇପାରେ । ଅବଶ୍ୟ ଅନ୍ୟାନ୍ୟ ବଡ଼ ବଡ଼ ସହର ପରି ଘଞ୍ଚ ଜନବସତି ବାହାରେ ରାସ୍ତାଘାଟ, ଘରଦ୍ଵାର, ପ୍ରାକୃତିକ ଶୋଭା ଅତି ଚମତ୍କାର । ଆଉ ସହର ମଝିରେ ଯେଉଁଠି ନର୍ଦ୍ଦମାର ପୂତିଗନ୍ଧ ଓ ଭଙ୍ଗା ଘର ଶ୍ରୀ ହୀନତା ସଙ୍ଗେ ମଳମିଶା କାଦୁଅ ମିଶିଯାଇଛି, ସେହି ଅଞ୍ଚଳକୁ କି ଶ୍ରୀନଗର କୁହାଯାଇପାରେ ।

ତହିଁ ଆରଦିନ ଉଣେଇଶ ତାରିଖ ସକାଳେ ଆମ୍ଭେମାନେ ସୋନମାର୍ଗ ଦେଖିବାକୁ ବାହାରିଲୁ । ଏହା ଶ୍ରୀନଗରଠାରୁ ବାବନ ମାଇଲ ଦୂରରେ ଓ ସମୁଦ୍ର ପତ୍ତନଠାରୁ ଏହାର ଉଚ୍ଚତା ୮୯୫୬ ଫୁଟ୍ । ଆମର ରାସ୍ତା ସିନ୍ଧ ନଦୀର କୂଳେ କୂଳେ ଚାଲିଥାଏ । କହିବା ବାହୁଲ୍ୟ ଏହି ସିନ୍ଧ ନଦୀ ଭୂଗୋଳ ପ୍ରସିଦ୍ଧ ସିନ୍ଧୁ ନଦୀ ନୁହେ । ଏହା ଝେଲମ୍‌ର ଗୋଟିଏ ଉପନଦୀ ଓ ଏହାର ଉଦ୍‌ଗମ ସ୍ଥଳ ସୋନମାର୍ଗକୁ ଆମ୍ଭେମାନେ ଯାଉଥିଲୁ । ଏହି ରାସ୍ତାରେ ଗଲେ ଶ୍ରୀନଗରଠାରୁ ଅଳ୍ପ ଦୂରରେ ଶେଖ୍‌ଅବଦୁଲ୍ଲାଙ୍କ ଗାଁ ସୌରା ପଡ଼େ । ଶେଖ ଅବଦୁଲ୍ଲାଙ୍କ ବଙ୍ଗଳା ଠିକ୍ ରାସ୍ତା ଉପରେ । ଛୋଟ ଛୋଟ ଗାଆଁମାନଙ୍କରେ ଅଧିକାଂଶ ଘର କାଠରେ ତିଆରି—ଅବଶ୍ୟ କାଠ ବାହାରେ ଇଟା ଯୋଡ଼ାଇ କରାଯାଇଥାଏ । କିନ୍ତୁ ଆମ ଆଡ଼େ ଯିମିତି ସିମେଣ୍ଟ କଂକ୍ରିଟ୍ ଗୃହ କରିବା ଅଧୁନିକ ସ୍ଥାପତ୍ୟର ଏକ ନିଦର୍ଶନ ହେଲାଣି, ଏ ଅଞ୍ଚଳରେ ସେପରି ନାହିଁ । ଏ ଆଡ଼େ ବହୁ ସ୍ଥାନରେ ସେଉ ଓ ନାସପାତିର ବଗିଚା ଦେଖାଯାଏ ।

ଅନ୍ୟାନ୍ୟ ରାସ୍ତା ତୁଳନାରେ ସୋନମାର୍ଗ ରାସ୍ତା ଖରାପ ଓ ଧୂଳିମୟ ଥିବାରୁ ଆମକୁ ଏ ରାସ୍ତା ଯିବାକୁ ସାଢ଼େ ତିନିଘଣ୍ଟା ଲାଗିଲା । ରାସ୍ତାର ଉଭୟ ପଟେ ପ୍ରାକୃତିକ ଦୃଶ୍ୟ ବଡ଼ ସୁନ୍ଦର । ଏ ଅଞ୍ଚଳର ସୌନ୍ଦର୍ଯ୍ୟ ହେଉଛି ପର୍ବତରେ ପାଇନ୍ ଦେବଦାରୁ ଓ ଉଇଲୋ ଗଛମାନଙ୍କର ସୁଷମ ସୌନ୍ଦର୍ଯ୍ୟ, କେଉଁଠି ଛୋଟ ହ୍ରଦର ବିସ୍ତୃତ ଶାନ୍ତ ନୀଳ ଜଳରାଶି ଓ ଅନ୍ୟଆଡ଼େ ଅଶାନ୍ତ, ମୁଖର ଫେନଧବଳ, ଶୀଘ୍ରଗାମୀ ନିର୍ଝର ଉଲ୍ଲେଖଯୋଗ୍ୟ ।



ଶ୍ରୀନଗରର ଡାଲ୍ ହ୍ରଦ

ଆମେ ପ୍ରାୟ ବାରଟା ବେଳେ ଯେଉଁଠାରେ ବସରୁ ଓହ୍ଲାଇଲୁ ସେଠାରେ ଭାରତୀୟ ସୈନ୍ୟ ଛାଉଣୀ । ଏହାର ଅଳ୍ପଦୂରରେ ତଥାକଥିତ ଆଜାଦ୍ କାଶ୍ମୀରର ସୀମାନ୍ତ ଓ ସେଠାରେ ପାକିସ୍ତାନୀ ସୈନ୍ୟଛାଉଣୀ ଅଛି ବୋଲି ଶୁଣିଲୁ । ଏହି ରାସ୍ତା ଦେଇ ପର୍ବତକୁ ଏବେ କାଶ୍ମୀରର ପୂର୍ବାଞ୍ଚଳରେ ଥିବା ଲଦାଖର ରାଜଧାନୀ ଲେହ ପର୍ଯ୍ୟନ୍ତ ରାସ୍ତା ଖୋଲିଛି ।

ଏ ଅଞ୍ଚଳ ପର୍ବତରେ ଦେଖ । ପର୍ବତମାନ ବର୍ଷର ଅଧିକାଂଶ ସମୟ ବରଫରେ ଆବୃତ ରହୁଥିବା ଯୋଗୁ ସେଠାରେ କୌଣସି ପ୍ରକାର ଗଛ ବା ଘାସ ଜନ୍ମି ପାରେ ନାହିଁ । କେବଳ ପଥର—ତାହା ମଧ୍ୟ ବିଶେଷ ଶକ୍ତ ନୁହେ ।

ସୋନମାର୍ଗ ଏହି ବସ ଷ୍ଟେସନରୁ ପ୍ରାୟ ତିନମାଇଲ । ଘୋଡ଼ାରେ କମ୍ବା ଚାଲିକରି ଯିବାକୁ ହୁଏ । ସୋନମାର୍ଗ ଏକ ବିସ୍ତୀର୍ଣ୍ଣ ପ୍ରାନ୍ତର । କାଶ୍ମୀରୀ ଭାଷାରେ 'ମାର୍ଗ' ଶବ୍ଦର ଅର୍ଥ 'ପଥ' ନୁହେଁ, 'ମାର୍ଗ' ହେଉଛି 'ପଡ଼ିଆ' । ଏଠାରେ ଅନେକ ଫୁଲଗଛ ଅଛି ଯହିଁର ହଳଦିଆ ଫୁଲରେ ଏହି ପଡ଼ିଆଟି ସୁନେଲି ରଙ୍ଗ ଧରେ ବୋଲି ଏହାକୁ 'ସୋନାମାର୍ଗ' କୁହାଯାଏ । ମଇ, ଜୁନ୍ ଓ ଜୁଲାଇ ମାସରେ କାଶ୍ମୀରର ସବୁ ଅଞ୍ଚଳ ପୁଷ୍ପଦ୍ୱାରା ସୁଶୋଭିତ ହୋଇଥାଏ ବୋଲି ସେ ସମୟକୁ କହନ୍ତି 'ପୁଷ୍ପଋତୁ' ଓ ଅଗଷ୍ଟରୁ ଅକ୍ଟୋବର ପର୍ଯ୍ୟନ୍ତ ନାନା ଜାତିର ଫଳ ପ୍ରଚୁର ପରିମାଣରେ ମିଳେ ବୋଲି ସେ ସମୟକୁ 'ଫଳଋତୁ' ବୋଲି କହନ୍ତି । ଆମେ ଯେତେବେଳେ କାଶ୍ମୀରରେ ପହଞ୍ଚିଲୁ, ସେତେବେଳେ 'ପୁଷ୍ପଋତୁ' ଶେଷ ହୋଇ 'ଫଳଋତୁ' ଆରମ୍ଭ ହେଉଥିଲା । ତେଣୁ ଆମେ ସୋନମାର୍ଗରେ ପୁଷ୍ପର ବର୍ଣ୍ଣ ବୈଭବ ଉପଭୋଗ କରିବାର ସୁଯୋଗ ପାଇ ପାରିଲୁ ନାହିଁ ।

ସୋନାମାର୍ଗରୁ ଅଳ୍ପ ଦୂରରେ ସିନ୍ଧନଦୀର ଉଦ୍‌ଗମସ୍ଥଳ—ଏକ ତୁଷାର ନଦୀ ଆମ ସାମନାରେ ଦେଖାଯାଉଥାଏ । ତୁଷାରାବୃତ ପର୍ବତରେ ମଧ୍ୟ ଦିନର ସୂର୍ଯ୍ୟକିରଣ ଉଜ୍ଜ୍ୱଳ ମୁକୁଟର ବିଭ୍ରମ ସୃଷ୍ଟି କରୁଥାଏ । ଆମ୍ଭର ପାଖରେ ଅଳ୍ପଦୂରରେ ଗୋଟିଏ ପର୍ବତରୁ ଗୋଟିଏ ଝରଣାର ପାଣି ଝରି ଏକ ବିରାଟ ବରଫର ଚଟାଣ ସୃଷ୍ଟି କରିଥାଏ । ଚଟାଣଟି ଖୁବ୍ ପାଖରେ ଥିବାର ଦେଖାଯାଉଥିବାରୁ ଆମେ ଗୁରୁଜଣ ବନ୍ଧୁ

ଶ୍ରୀ ବଜସୁଚନ୍ଦ୍ର ପ୍ରଧାନ, ଶ୍ରୀ ବୈରାଗୀ ଦ୍ୱିବେଦୀ, ଶ୍ରୀ ରଘୁନାଥ ପ୍ରହରାଜ ଓ ମୁଁ ସେହି ବରଫ ଚଟାଣ ପାଖକୁ ବାହାରିଲୁ । ଆମକୁ ପ୍ରାୟ ଚାରିଶହ ଫୁଟ୍ ଉଚ୍ଚକୁ ଚଢ଼ିବାକୁ ପଡ଼ିଥିବ । ମାଝ ମଝିରେ ଦୁଇଥର ବିଶ୍ରାମ ନେବାକୁ ବାଧ ହେଲୁ, କାରଣ ରାସ୍ତା ଖୁବ୍ ଗଡ଼ାଣିଆ ଥିଲା । ବରଫର ଚଟାଣ ମଝିରେ ଗୋଟିଏ ଗୁମ୍ଫା ଭଳିଆ ସ୍ଥାନ ତିଆରି ହୁଏ ଓ ସେହି ବାଟେ ଉପର ଝରଣାରୁ ପାଣି ଗଡ଼ି ତଳକୁ ବହିଯାଏ ।

ଆମେ ଅନେକ ସମୟ ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗ କଲାପରେ ପର୍ବତରୁ, ଓହ୍ଲାଇ ତଳେ ଆଣାଯାଇଥିବା ଖାଦ୍ୟରେ ଏକ ବଣଭୋଜି ଉପଭୋଗ କଲୁ ଓ କେତେ ଫଟୋ ନେଇ ସାତେ ଚାରିଟାବେଳେ ଶ୍ରୀନଗର ଅଭିମୁଖେ ଫେରିଲୁ ।

ଶ୍ରୀନଗରକୁ ଫେରି ସନ୍ଧ୍ୟା ଭୋଜନ ପରେ ଡାଲ୍ ହ୍ରଦରେ ନୌକା ବିହାର ପାଇଁ ବାହାରିଲୁ । ଯୋଡ଼ା ହୋଇଥିବା ଦୁଇଟି ଶିକାରାରେ ସକୁଟୁମ୍ବ ମହାରାଜା ଓ ଆମେ ଚାରିଜଣ ସାଥୀ ଅଳସ ଭାବେ ଚାଲିଥାଉଁ । ମେଘମୁକ୍ତ ଆକାଶରୁ ଶୁକ୍ଳ ସପ୍ତମୀର ଚନ୍ଦ୍ର ହ୍ରଦରେ ପ୍ରତିଫଳିତ ହୋଇ ଆମଠାରୁ ଅନତିଦୂରବର୍ତ୍ତୀ ପଥପ୍ରାନ୍ତରେ ଥିବା ବୈଦ୍ୟୁତିକ୍ ଆଲୋକର ପ୍ରତିବିମ୍ବ ସହିତ ପ୍ରତିଯୋଗିତା କରୁଥିଲା । କେତେ ହସ ଓ କାନ୍ଦ, କେତେ ମିଳନ ଓ ବିୟୋଗ, କେତେ ବିଳାସ ଓ ବିଳାପ, କେତେ ଧର୍ମାନ୍ଧତା ଓ ହତ୍ୟାକାଣ୍ଡ, କେତେ ସୌନ୍ଦର୍ଯ୍ୟର ପ୍ରଦର୍ଶନୀ ଓ ବିଜେତାର ଜୟଧ୍ୱନି ଏ ହ୍ରଦ ଗର୍ଭରେ ପ୍ରତିଫଳିତ ହୋଇଛି ସେହି ବିଷୟରେ ମୁଁ ଭାବୁଥିଲି । କୌଣସି ନୂତନ ରାଜ୍ୟକୁ ଗଲେ ତାର ବିସ୍ମୃତ ଇତିହାସର ପ୍ରତ୍ୟକ୍ଷ ପୁନରାଭିନୟ ମନଶ୍ଚକ୍ଷୁରେ ଦେଖିବାକୁ ଇଚ୍ଛା ହୁଏ । କିଏ ଥିଲା ଏ ନଗରୀ, ଯେତେବେଳେ ସମ୍ରାଟ୍ ଅଶୋକଙ୍କର ପୁତ୍ର ଜାଲୁକ ଏ ରାଜ୍ୟର ରାଜଧର୍ମକୁ ବୌଦ୍ଧଧର୍ମରୁ ହିନ୍ଦୁଧର୍ମକୁ ପରିବର୍ତ୍ତିତ କରିଥିଲେ, ଯେତେବେଳେ ହୂନରାଜା ମିହିରକୁଳ ଏ ହ୍ରଦକୁ ମନୁଷ୍ୟ ରକ୍ତରେ ରଞ୍ଜିତ କରିଥିଲେ, ଯେତେବେଳେ ରାଜା ଅବନ୍ତୀବର୍ମା ତାଙ୍କର ସଭାକବି ରତ୍ନାକର ଓ ଆନନ୍ଦ ବର୍ଦ୍ଧନଙ୍କର କବିତା ଏହି ହ୍ରଦରେ ସନ୍ଧ୍ୟାବେଳେ ନୌକାବିହାର ସମୟରେ ଶୁଣୁଥିଲେ ଯେତେବେଳେ ଏହିପରି ଏକ ଜ୍ୟୋତ୍ସ୍ନା ଧବଳା ରାତିରେ ଏକ ବିରାଟ ସୁସଜ୍ଜିତ ନୌକାରେ ଜାହାଙ୍ଗିର୍

ଆଜି ନୁରଜାହାନ୍ ମଦଗର୍ବମତ୍ତ ହୋଇ କେଉଁ ନର୍ତ୍ତକୀର ଲାସ୍ୟରେ ତାଳ ଦେଉଥିଲେ । ଯେତେବେଳେ ସୁଲତାନ୍ ହାମଦାଦ୍ ଖାଁ ତାଙ୍କର ପ୍ରଜାମାନଙ୍କ ଉପରେ ଏହିଠାରେ ଅତ୍ୟାଚାର କରୁଥିଲେ, ସେତେବେଳେ ଶୁକ୍ଳ ସପ୍ତମୀର ଚନ୍ଦ୍ର ଆକାଶରୁ ନୀରବରେ ଏହିପରି ଚାହିଁଥିଲା । ଆମେ ଏକ ନିବାତ, ଶୀତଳ ରାତିରେ ନିସ୍ତରଙ୍ଗ ହ୍ରଦ ମଧ୍ୟରେ ଥିବା ନେହେରୁ ପାର୍କ ଆଡ଼କୁ ଅଗ୍ରସର ହେଉଥିଲୁ ।

ଯେଉଁଠି ସ୍ୱର୍ଗ, ସମୟ ସେଠାରେ ଅଚଳ । ସେଠାରେ ପଲକ, ଲିତା, ବିଲିତା ବା ସେକେଣ୍ଡ ମିନିଟ୍ ନେଇ କୃପଣ ନରଜୀବ ହିସାବ ରଖେ ନାହିଁ । ସେଠାରେ କାଳ ଏକ ଅବିଚ୍ଛେଦ୍ୟ । ଅତୀତ ଓ ଭବିଷ୍ୟତ ସେଠାରେ ବର୍ତ୍ତମାନ ସହିତ ଓତଃପ୍ରୋତ ଭାବରେ ଜଡ଼ିତ । ମୁଁ ସେହି କଳ୍ପନାର ସ୍ୱର୍ଗରେ ଜାହାଙ୍ଗୀର ଯୁଗର ଐଶ୍ୱର୍ଯ୍ୟ ଓ ବିଭୂତିକୁ ଆଗାମୀ ଯୁଗର ଲକ୍ଷ ଲକ୍ଷ ଯୁବକ ଯୁବତୀମାନଙ୍କୁ ମଧ୍ୟ ବିତରଣ କରୁଥିଲି । କିନ୍ତୁ ରାତି ବଢି ଆସୁଥିଲା । ନେହେରୁ ପାର୍କରେ କିଛି ସମୟ ବୁଲାବୁଲି କରି ଆମେ ଯେତେବେଳେ ଡ଼ଙ୍ଗା ଘରକୁ ଫେରିଲୁ, ସେତେବେଳେ ରାତି ଏଗାରଟା ବାଜି ସାରିଥିଲା ।

ତହିଁ ଆରଦିନ ରବିବାର ଥିଲା । ଏଇ ଦିନ ଶ୍ରୀନଗର ବାହାରେ କୌଣସି ଦର୍ଶନୀୟ ସ୍ଥାନକୁ ବସ୍ ଯାଏ ନାହିଁ । କିନ୍ତୁ ଶ୍ରୀନଗର ସହରରେ ଓ ଆଖ ପାଖରେ ଥିବା ଦର୍ଶନୀୟ ସ୍ଥାନମାନଙ୍କୁ ବସ୍ ଯାତ୍ରୀମାନଙ୍କୁ ଦେଖାଇବା ପାଇଁ ନିଏ । ଆମର ଦୁର୍ଭାଗ୍ୟକୁ ସେଦିନ ସକାଳେ ମେଘୁଆ ପାଗ ହୋଇଥାଏ । ଆମେ ନଗର ପରିକ୍ରମା ପାଇଁ ବସ୍‌ରେ ବାହାରିଲୁ । ଶ୍ରୀନଗର ସହରରେ ଓ ସହର ପାଖରେ ଯେତେ ଦର୍ଶନୀୟ ସ୍ଥାନ ଅଛି ସେସବୁ ବସ୍‌ରେ ବୁଲି ଦେଖିବାକୁ ପ୍ରାୟ ଚାରିଘଣ୍ଟା ସମୟ ଲାଗେ ।

ଶ୍ରୀନଗରର ଅନ୍ୟତମ ଦର୍ଶନୀୟ ସ୍ଥାନ ଡ଼ାଲ୍ ହ୍ରଦ ବିଷୟରେ ପୂର୍ବରୁ କୁହାଯାଇଛି । ଏହା ସହର ମଧ୍ୟରେ ଏକ ମନୋରମ ପ୍ରାକୃତିକ ଅଲଙ୍କାର । ଏହାର ତିନିଆଡ଼େ ତିନୋଟି ସୁଦୃଶ୍ୟ ପର୍ବତ । ତହିଁମଧ୍ୟରୁ ଶଙ୍କରାଚାର୍ଯ୍ୟ ପର୍ବତ ଅନ୍ୟତମ । ଏହି ପର୍ବତ ଉପରେ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀର ଏକ ମନ୍ଦିର ଅଛି । ଏହାକୁ ଶଙ୍କରାଚାର୍ଯ୍ୟ ପୁନଃପ୍ରତିଷ୍ଠା କରିଥିଲେ ବୋଲି ଏହା ତାଙ୍କରି ନାମରେ ପ୍ରସିଦ୍ଧ । ଏହି ପର୍ବତ ପାଖରେ

ମହାଦେବ ପର୍ବତ ଓ ଅନ୍ୟ ଦିଗରେ ହରି ପର୍ବତ । ଦେବ ଓ ଅସୁର-ମାନଙ୍କର ସଂଗ୍ରାମରେ ଦେବତାମାନେ ଶାରିକା ଦେବୀଙ୍କୁ ସ୍ତୁତି କରିବାରୁ ଶାରିକାଦେବୀ ପକ୍ଷୀ ବେଶ ଧରି ଗୋଟିଏ ପଥର ଅସୁରମାନଙ୍କ ଉପରେ ପକାଇବାରୁ ସେମାନେ ଧ୍ୱଂସ ହୋଇଗଲେ ଓ ସେହି ଅସୁରମାନଙ୍କର ସମାଧି ଉପରେ ଏହି ହରି ପର୍ବତ ବଢ଼ିଛି ବୋଲି କିମ୍ବଦନ୍ତୀ ଅଛି । ହରି ପର୍ବତ ଉପରେ ଆକ୍‌ବର ଏକ ଦୁର୍ଗ ନିର୍ମାଣ କରାଇଥିଲେ । ସେ ଦୁର୍ଗ ଏପର୍ଯ୍ୟନ୍ତ ଏ ପର୍ବତର ମୁକୁଟ ସ୍ୱରୂପ ଶୋଭା ପାଉଛି ।

ହରିଦ୍ୱାର ଗଙ୍ଗାନଦୀର ଉଦ୍‌ଗମ ସ୍ଥଳରୁ ଶହ ଶହ ମାଇଲ ଦୂରରେ ଥିଲେ ସୁଦ୍ଧା ସେଠାରେ ଗଙ୍ଗା ଖରସ୍ରୋତା । ମାତ୍ର ଶ୍ରୀନଗରରେ ଝେଲମ୍ ନଦୀ ଉଦ୍‌ଗମ ସ୍ଥଳରୁ ମୋଟେ ତେପନ ମାଇଲ୍ ଦୂରରେ ଥାଇ ଓ ପାର୍ବତ୍ୟ ଅଞ୍ଚଳରେ ଥାଇ ସୁଦ୍ଧା ମୃଦୁସ୍ରୋତା । ଝେଲମ୍ ନଦୀ ଦୁଇକୂଳରେ ଶ୍ରୀନଗରର ବସତି । ପାଞ୍ଚଟି ପୋଲ ସହରର ଏକ ଅଂଶକୁ ନଦୀର ଅନ୍ୟ ତଟରେ ଥିବା ଅଂଶ ସହିତ ସଂଯୁକ୍ତ କରୁଅଛି । ଏଠାରେ ପୋଲକୁ କଦଲ୍ କହନ୍ତି । ଝେଲମ୍ ନଦୀରେ ଅସଂଖ୍ୟ ଡଙ୍ଗାଘର ଅଛି ।

ଝେଲମ୍ ନଦୀ କୂଳରେ ଅଭିଜାତ ଦୋକାନମାନ ଅନେକ ଅଛି । ଏଠାରେ ବିଶେଷ କରି ଶାଲ୍, ପଶମ ଓ ରେଶମର ବସ୍ତ୍ର, କାଠର କାରୁକାର୍ଯ୍ୟ ଖଚିତ ପଣ୍ୟଦ୍ରବ୍ୟ, ପେପର୍‌ମେଚି (କାଗଜ ଉପରେ କାରୁକାର୍ଯ୍ୟ କରାଯାଇଥିବା ପଣ୍ୟଦ୍ରବ୍ୟ ଓ ଫଳର ବିକ୍ରୀବେଶୀ ।)

ଏଠାରେ କେତେ ଜିନିଷ ବିଶେଷ ଶସ୍ତା; ଯଥା:—
ନାସପତି—ସେର ଅଠଅଣା ।
ସେଓ—ସେର ବାର ଅଣାରୁ ଦୁଇଟଙ୍କା ।
ଭଲଗାଲିଚା—ବାରଟଙ୍କାରୁ ଆରମ୍ଭ କରି ଶହ ଶହ ଟଙ୍କା ।
ଶାଲ୍—ସାଧାରଣ-କୋଡ଼ିଏ ପଚିଶ ଟଙ୍କା ।
ଶାଳୀ—ଟଙ୍କାକୁ ଗୁଣସେର ।
ଚେଳା—(ଗରମ) ଗୋଟାକୁ ଛଅପଇସା ।

ଉପର୍ଯ୍ୟୁକ୍ତ ହିସାବରୁ କେହି ଯେପରି ମନେ ନ କରନ୍ତି ଯେ ତାଙ୍କର ପତ୍ନୀର ସହୋଦରମାନେ କାଶ୍ମୀର ବଜାରରେ ସେର ହିସାବରେ ବିକ୍ରୀ ହୁଅନ୍ତି । କାଶ୍ମୀରୀ ଭାଷାରେ 'ଶାଳି' ଶବ୍ଦର ଅର୍ଥ ହେଉଛି 'ଧାନ', ସଂସ୍କୃତରେ ମଧ୍ୟ ଶାଳି-ଅନ୍ନ ବୋଲି କଥା ଅଛି । କାଶ୍ମୀର ଗତ ଛଅଶ

ଶତାବ୍ଦୀରୁ ଅଧିକ କାଳ ମୁସଲମାନ ଓ ମଧ୍ୟ ଏସିଆର ସଭ୍ୟତାରେ ଜଡ଼ୀଭୂତ ହୋଇଥିଲେ ସୁଦ୍ଧା ଅନେକ ସଂସ୍କୃତଜ ଶବ୍ଦ ଏବେ ମଧ୍ୟ ସେଠାରେ ପ୍ରଚଳିତ ଅଛି । ଉପରେ କୁହାଯାଇଥିବା ଛେଲ ହେଉଛି ବାସ୍ତବରେ 'ମକା', ପାର୍ବତ୍ୟ ଅଞ୍ଚଳରେ ଯେଉଁଠି ଧାନ ଫସଲ ଭଲ ହୁଏ ନାହିଁ; ସେଠାରେ ମକା ଭଲ ଫଳେ ।

କାଶ୍ମୀରରେ ଚନାର ଗଛମାନ ପ୍ରସିଦ୍ଧ । 'ଚନାର' ଶବ୍ଦର ଅର୍ଥ ହେଉଛି 'ଅଗ୍ନି ବୃକ୍ଷ' । ଶୀତ ଋତୁରେ ବରଫ ପଡ଼ିଲା ସମୟରେ ଏହି ଗଛର ଶୁଖିଲା ପତ୍ର, ଶାଖା ସବୁ ଉଜ୍ଜ୍ୱଳ ଲାଲରଙ୍ଗ ହୋଇ ନିଆଁ ପରି ଦେଖାଯାଏ ବୋଲି ଏହାକୁ ଚନାର ଗଛ ବୋଲି କୁହାଯାଏ । ଆଧୁନିକ ଓଡ଼ିଆ କବିତାରେ 'ଚନାର' ଶବ୍ଦଟି ବକୁଳିର 'ପଗଡ଼' ପରି ଲୋକପ୍ରିୟ । ଶ୍ରୀନଗରର ଏକ ଅଭିଜାତ ଅଞ୍ଚଳକୁ ଚନାର-ବାଗ କୁହାଯାଏ ।

ଆମେ ରବିବାର ସକାଳେ ଶ୍ରୀନଗରର ଦର୍ଶନୀୟ ସ୍ଥାନମାନ ଦେଖିବା ପାଇଁ ବସ୍‌ରେ ବାହାରିଲୁ ଓ ପ୍ରଥମରୁ 'ଚଶ୍‌ମା-ଶାହି'ରେ ପହଞ୍ଚିଲୁ । ଏ ଅଞ୍ଚଳରେ ଚଶ୍‌ମାର ଅର୍ଥ ହେଉଛି ଝରଣା । 'ଚଶ୍‌ମା-ଶାହି'ର ଅର୍ଥ ହେଉଛି 'ଝରଣା ମାନଙ୍କର ରଜା' ବା 'ରଜାଙ୍କର ଝରଣା' । ଡାଲ ହ୍ରଦର ଅନତି ଦୂରରେ ମହାଦେବ ପର୍ବତର ପାଦ ଦେଶରେ ଏହି ଝରଣା ଗୋଟିଏ ମୋଗଲ-ଉଦ୍ୟାନରେ ଘେରା । ଏ ଝରଣାର ପାଣି କ୍ଷୁଧା ବୃଦ୍ଧିରେ ସାହାଯ୍ୟ କରେ ଓ ପେଟରେ ରୋଗ ନାଶ କରେ । ମୋର ବନ୍ଧୁମାନେ ଏ ଝରଣାର ପାଣି ପିଇଲାବେଳେ ମୁଁ ସେମାନଙ୍କୁ ସାବଧାନ କରାଇ ଦେଲି ଯେ ଏ ଝରଣାର ପାଣି ଅଧିକ ପିଇଲେ ହୋଟେଲ ଖର୍ଚ୍ଚ ବଢ଼ିଯିବ ।

କାଶ୍ମୀରର ଜଳବାୟୁ ବିଷୟରେ ନିମ୍ନଲିଖିତ ପାରସ୍ୟ ପଦ୍ୟ ପ୍ରସିଦ୍ଧ:—

"ହର୍ ଶୋଖ୍‌ତା ଜାନ୍ ଏ କ ବା
କାଶ୍ମୀର ଦେର୍ ଅୟାଦ୍
ଗର୍ ମୁର୍ଗୀ କବାବ୍ ଅସ୍ତ ବା
ବାଲ୍ ଓ ପେର୍ ଆୟାଦ୍ ।"

ଅର୍ଥାତ୍ କୌଣସି ଅସ୍ଥିକଙ୍କାଳସାର ଜୀବ ଯଦି କାଶ୍ମୀରକୁ ଆସେ, ତେବେ ଏଠାରେ ତାର ସ୍ୱାସ୍ଥ୍ୟର ନିଶ୍ଚୟ ଉନ୍ନତି ହେବ, ଏପରିକି ମୁର୍ଗୀର କବାବ୍‌ରେ ମଧ୍ୟ ପର ଓ ଡେଣା ଗଜରି ଉଠେ ଏଠାରେ । ଝରଣାର ପାଣି ପିଇବାରେ ଯେଉଁ ବିପଦ ତାହା ସଙ୍ଗେ ଏହି ବିପଦ ବିଷୟରେ ଆଲୋଚନା କରି ମୁଁ କହିଥିଲି ଯେ ଏଠାରେ ମୁର୍ଗୀ କବାବ୍ ଖାଇଲେ ତାହା ପେଟ ଭିତରେ ପର ଓ ଡେଣା ଧାରଣ କରି 'କୁକୁଡ଼ୁ କୁଁ' ଶବ୍ଦ କଲେ ଅସ୍ତ୍ରୋପଚାରର ଦରକାର ପଡ଼ିପାରେ । ଅତଏବ ସାଧୁ ସାବଧାନ !

ଚଶମା-ଶାହୀରୁ ଆମେ ହରୱାନ୍ ଜଳଯୋଗାଣ କେନ୍ଦ୍ରକୁ ଗଲୁ । ଏହା ଶ୍ରୀନଗରଠାରୁ ଏଗାର ମାଇଲ ଦୂରରେ ଗୋଟିଏ ଶ୍ରେଷ୍ଠ ହ୍ରଦ । ଏଠାରୁ ଶ୍ରୀନଗର ପାଇଁ ପାନୀୟ ଜଳ ଯୋଗାଇ ଦିଆଯାଏ । ଏହା ପାଖରେ ଗୋଟିଏ ମତ୍ସ୍ୟବିକାଶ କେନ୍ଦ୍ର ଅଛି । ଏଠାରେ ଟ୍ରାଉଟ୍ ଜାତୀୟ ମାଛ ରକ୍ଷା କରାଯାଏ । ଆମେ ଯେତେବେଳେ ଏହି ମତ୍ସ୍ୟ ବିକାଶ କେନ୍ଦ୍ରକୁ ପରିଦର୍ଶନ ପାଇଁ ଗଲୁ, ସେତେବେଳେ ଆକାଶ ସାମାନ୍ୟ ମେଘାଚ୍ଛନ୍ନ ଥିଲା ଓ ମାଛମାନେ ଗଭୀର ଜଳରେ ନିଦ୍ରାସୁଖ ଉପଭୋଗ କରୁଥିଲେ । ଏଣୁ ଆମେ ଟ୍ରାଉଟ୍-ଦର୍ଶନ-ସୁଯୋଗ ନ ପାଇ ହତାଶ ହୋଇ ଫେରିଲୁ ।

ଏହାର ଅଳ୍ପ ଦୂରରେ 'ଶାଲୀମାର୍' ପ୍ରମୋଦ ଉଦ୍ୟାନ । 'ଶାଲୀମାର୍'ର ଅର୍ଥ ହେଉଛି 'ପ୍ରେମନିବାସ' ଭେରିନାଗର ପ୍ରମୋଦ ଉଦ୍ୟାନ ପରି ଏହି ପ୍ରମୋଦ ଉଦ୍ୟାନକୁ ମଧ୍ୟ ଜାହାଙ୍ଗୀର ନିର୍ମାଣ କରାଇଥିଲେ । ଏକ ବିରାଟ ଉଦ୍ୟାନ ମଝିରେ କଳା ମାର୍ବଲ୍ ସ୍ତମ୍ଭ ପରିଶୋଭିତ ଏକ ବିରାଟ ବାଟିକା ଅଛି । ତହିଁର ଚାରିଆଡ଼େ ଫୁଆରାମାନଙ୍କରୁ ଜଳୋଚ୍ଛ୍ୱାସ କରାଇବାର ବ୍ୟବସ୍ଥା ଅଛି । ମଝିରେ ପକ୍କା କେନାଲ୍‌ର ଦୁଇପାଖେ ନାନା ରଙ୍ଗର ଫୁଲ ଓ ସମତଳ ଘାସର ଗାଲିଚା ।

ପ୍ରତି ରବିବାର ଦିନ ଏହି ଫୁଆରା ଓ ଝରଣାରେ ପାଣିଛାଡ଼ି ଦର୍ଶକମାନଙ୍କୁ ଆକୃଷ୍ଟ କରିବାର ବ୍ୟବସ୍ଥା ଥିଲେ ମଧ୍ୟ ଆମେ ସେଠାକୁ ଯିବା ଦିନ ଜଳାଶୟ ଫୁଆରାମାନ ଶୁଷ୍କ ଓ ଶ୍ରୀହୀନ ଦିଶୁଥିଲା । ଆକାଶ ଅଧିକରୁ ଅଧିକ ମେଘାଚ୍ଛନ୍ନ ହୋଇ ଆସୁଥିଲା । କିନ୍ତୁ ଶ୍ୟାମଳ ପୃଷ୍ଠ ଭୂମିରେ


Digitized by srujanika@gmail.com



ଜାହାଙ୍ଗିରଙ୍କଦ୍ୱାରା ନିର୍ମିତ ଶାଲମାର ଉଦ୍ୟାନ

ଶବଳିତ ପୁଷ୍ପଶଯ୍ୟାମାନ ଅମାକାଶର ଶୁଭ୍ର ପଥ ପରି ସୁନ୍ଦର ଦିଶୁଥିଲା । ଏହି ଶୁଷ୍କ ଜଳୋଚ୍ଛ୍ୱାସହୀନ ଜଳାଶୟ ସହିତ ମୁଁ ନିଜକୁ ତୁଳନା କରୁଥିଲି । 'ପ୍ରେମ ନିବାସ'ରେ କାହାକୁ ପ୍ରେମନିବେଦନ କରିବାର ପରିବେଶ ବା ଉପାଦାନ ବା ପ୍ରବୃତ୍ତି ନ ଥିଲା । ତେଣୁ ଏପରି ପରିସ୍ଥିତିରେ କୋମଳ ସୁରଭିଯୁକ୍ତ ପୁଷ୍ପମାନଙ୍କୁ ପ୍ରେମନିବେଦନ କରି ଶାଲିମାର ଉଦ୍ୟାନରୁ ଫେରିଲି ।

ତାପରେ ଆମେ ଗଲୁ 'ନିଶାତ୍‌ବାଗ୍‌'କୁ, ନିଶାତ୍ ବାଗ୍‌ର ଅର୍ଥ ପ୍ରମୋଦ-ଉଦ୍ୟାନ । ଏହା ଏକ ପର୍ବତର ପାଦ ଦେଶରେ ଅବସ୍ଥିତ । ତେଣୁ ବିଭିନ୍ନ ସ୍ତରରେ ଉଦ୍ୟାନଟି ସଜା ହୋଇଛି । ମଝିରେ କେନାଲ ପକ୍‌କା ରାସ୍ତା ଉପରେ ବନ୍ଧାଯାଇଛି ଓ ଦୁଇ ପାଖରେ ସୁନ୍ଦର ଫୁଲର ବଗିଚା । ସାମନାରେ ଗୋଟିଏ ଦୁଇମହଲା ଘର । ଏହା ନୂରଜାହାନଙ୍କ ଭାଇ ଏବଂ ଶାହାଜାହାନଙ୍କ ପ୍ରଧାନମନ୍ତ୍ରୀ ଆସଫ୍‌ଖାନଙ୍କ ଦ୍ୱାରା ନିର୍ମିତ ହୋଇଥିଲା ।

ଆମ୍ଭେମାନେ ଏଠାକୁ ପହଞ୍ଚିଲା ସମୟରେ ଆକାଶ ମେଘାଚ୍ଛନ୍ନ ହୋଇଥିଲା । ଆମ୍ଭେମାନେ ପହଞ୍ଚିବା ସଙ୍ଗେ ସଙ୍ଗେ ଶୀତଳ ପବନ ସହିତ ମୁଷଳଧାରରେ ବର୍ଷା ଆରମ୍ଭ ହେଲା । ତେଣୁ ଆମେ ଆଉ ନିଶାତବାଗ୍‌ର ସୌନ୍ଦର୍ଯ୍ୟ ଉପଭୋଗ କରି ପାରିଲୁ ନାହିଁ । କୌଣସି ମତେ ବାହାର ଘରେ ଆଶ୍ରୟ ନେଲୁ । ଏହି ଘରର ମହଲାରୁ ଡାଲ୍ ହ୍ରଦର ଦୃଶ୍ୟ ସୁନ୍ଦର ଦେଖାଯାଏ । ବର୍ଷା ସହିତ ପବନ ପ୍ରବଳ ହେବାରୁ ଶୀତ ଜଣାଗଲା । ଅଧଘଣ୍ଟା ପର୍ଯ୍ୟନ୍ତ ଅପେକ୍ଷା କରି ସୁଦ୍ଧା ବର୍ଷା କମିବାର କୌଣସି ଲକ୍ଷଣ ଦେଖା ନ ଯିବାରୁ, ଆମେ କୌଣସି ମତେ ବସ୍‌କୁ ଫେରି ଆସିଲୁ । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ସ୍ୱର୍ଗତ ଶ୍ୟାମା-ପ୍ରସାଦ ମୁଖର୍ଜି ଯେତେବେଳେ ସରକାରୀ କଟକଣା ନ ମାନି ବିନା ଅନୁମତି ପତ୍ରରେ କାଶ୍ମୀରରେ ପ୍ରବେଶ କରିଥିଲେ ସେତେବେଳେ ତାଙ୍କୁ ଏହି ନିଶାତ ବାଗ୍‌ରେ ଅଟକବନ୍ଦୀ କରାଯାଇଥିଲା ଓ ଏହିଠାରେ ସେ ପ୍ରାଣ ହରାଇଥିଲେ । ସୌନ୍ଦର୍ଯ୍ୟ ଓ ପ୍ରମୋଦର ଏହି ଲୀଳାସ୍ଥଳମାନ କେତେ ଶୋକ, ହତ୍ୟା, ବ୍ୟଭିଚାର ଓ ଅତ୍ୟାଚାର ସହିତ ଜଡ଼ିତ, ତାହା କିଏ କହିବ ?

ବର୍ଷା ହେତୁରୁ ଆଉ କୌଣସି ଆଡେ ଯାଇ ନ ପାରି ଡଙ୍ଗା ଘରକୁ ଫେରିବାକୁ ବାଧ୍ୟ ହେଲୁ । ସେଦିନ ଅପରାହ୍ଣରେ ଆକାଶ ମେଘମୁକ୍ତ ହେବାରୁ ଶ୍ରୀନଗର ପରିକ୍ରମା ପାଇଁ ବାହାରିଲୁ । ଝେଲମ୍ ନଦୀରେ ଶିକାରାରେ କିଛି ସମୟ ବୁଲିଲାପରେ ସରକାରୀ ପ୍ରଦର୍ଶନୀ ଗୃହକୁ ବଜାର ସଉଦା ପାଇଁ ଗଲୁ । ସେଠାରେ କାଠ, କାଗଜ, ସୁନା, ରୁପାର କାରୁକାର୍ଯ୍ୟ ଦେଖି, ଶାଲ, ଶାଢ଼ୀ ଆଦି ଦେଖିବା ଓ କିଣିବାରେ ସନ୍ଧ୍ୟା ଅତିବାହିତ ହେଲା ।

ତହିଁ ଆରଦିନ ସକାଳୁ ଗୁଲ୍‌ମାର୍ଗ ଦେଖିବାକୁ ଗଲୁ । ଆଧୁନିକ ଟୁରିଷ୍ଟମାନଙ୍କ ଦୃଷ୍ଟି କୋଣରୁ ଗୁଲମାର୍ଗ ଓ ପହଲଗାମ୍ ଦୁଇଟି ପ୍ରସିଦ୍ଧ 'ତୀର୍ଥସ୍ଥାନ'—କାରଣ ଏ ସ୍ଥାନକୁ ଚଳଚିତ୍ରତାରକାମାନଙ୍କ ଠାରୁ ଆରମ୍ଭ କରି ଆମେରିକାର କୋଟିପତି ପର୍ଯ୍ୟଟକମାନେ; ସମସ୍ତେ କାଶ୍ମୀର ଭ୍ରମଣ ପାଇଁ ଏ ଦୁଇ ସ୍ଥାନକୁ ଯାଆନ୍ତି । ତେଣୁ ପ୍ରାଚୀନ ତୀର୍ଥ ଅମରନାଥ ସହିତ ଆଧୁନିକ ତୀର୍ଥମାନ ମଧ୍ୟ ଆମ୍ଭମାନଙ୍କ ପକ୍ଷରେ ଅବଶ୍ୟ ଦର୍ଶନୀୟ ଥିଲା, ଆଧୁନିକ ତୀର୍ଥରେ ବୈଜ୍ଞାନିକ ବିଭୂତି, ଓ ପ୍ରାଚୀନ ତୀର୍ଥରେ ଶିବ ବିଭୂତି ଉଭୟ ହିଁ ବରଣୀୟ । ପ୍ରାଚୀନ ତୀର୍ଥକୁ ଯାତ୍ରା କରିବା ପାଇଁ ଆମେ ଯେପରି ସମସ୍ତ ପ୍ରକାର ଶାରୀରିକ କ୍ଲେଶ ବରଣ କରି ତପସ୍ୟା ପାଇଁ ପ୍ରସ୍ତୁତ ଥିଲୁ, ଆଧୁନିକ ତୀର୍ଥଯାତ୍ରା ପାଇଁ ମଧ୍ୟ ସେହିପରି ଶାରୀରିକ ପରିଶ୍ରମ ଦରକାର । କିନ୍ତୁ ପ୍ରଥମ କ୍ଷେତ୍ରକୁ ଯେଉଁ କ୍ଲେଶକୁ ତପସ୍ୟା କୁହାଯାଏ, ଆଧୁନିକ ତୀର୍ଥରେ ତାହାକୁ କୁହାଯାଏ ବ୍ୟାୟାମ ।

ଆମେ ସକାଳ ନଅଟାରେ ଶ୍ରୀନଗରରୁ ବାହାରିଲୁ । ଏ ଦିନ ଆକାଶ ନିର୍ମଳ ଥିଲା । ପ୍ରଭାତ ସୂର୍ଯ୍ୟର ସ୍ନିଗ୍ଧ ଶୀତଳ କିରଣ ସୁଖକର ଥିଲା । ସରଳ, ଦିଗନ୍ତପ୍ରସାରୀ ରାଜପଥର ଉଭୟ ଦିଗରେ ସରଳ, ଉଚ୍ଚ, ସୀମାନ୍ତରାଳ ପ୍ରାୟ ଉଇଲୋ ବୃକ୍ଷମାନ ଆମର ସ୍ୱାଗତ ପାଇଁ ତୋରଣ ପରି ଦେଖାଯାଉଥାଏ । ଏହି ରାସ୍ତାରେ 'ବର୍ଷାତ' କଥାଚିତ୍ରର ଦୃଶ୍ୟର ଛବି ନିଆଯାଇଛି ବୋଲି ମହାରାଜା କହିଲେ । ପୂର୍ବରୁ ଏତେ ପ୍ରସିଦ୍ଧ ଚଳଚିତ୍ରତାରକାମାନେ ଯେଉଁ ପଥରେ ଯାଇଛନ୍ତି, ତାହାହିଁ 'ମହାଜନୋ ଯେନ ଗତଃ ସ ପନ୍ଥାଃ' ମତରେ ଆମର ଅନୁସରଣୀୟ ପଥ ବୋଲି ମୁଁ ଭାବୁଥିଲି ।

ବପ୍ ଚବଟ ମାଇଲ ପର୍ଯ୍ୟନ୍ତ ଯାଏ ଟଙ୍ଗ୍‌ମାର୍ଗ ପର୍ଯ୍ୟନ୍ତ। ଟଙ୍ଗ୍‌ମାର୍ଗରୁ ଗୁଲମାର୍ଗ ପର୍ଯ୍ୟନ୍ତ ଚାରିମାଇଲ ଘୋଡ଼ାରେ ବା ଚାଲି କରି ଯିବାକୁ ହୁଏ। ଆମେ ସମସ୍ତେ ଘୋଡ଼ାରେ ଗଲୁ। ପର୍ବତ ଉପରେ ପ୍ରଶସ୍ତ ପଥରେ ଆମେ ବନ୍ଧୁଯାତ୍ରୀ ଚାଲିଆଡ଼ୁ ଚାରିଆଡ଼ର ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗ କରି। ଆମର ବାମ ପଟରେ ପ୍ରାୟ ହଜାରେ ଫୁଟରୁ ଅଧିକ ତଳେ ଦେଖାଯାଉଥାଏ 'ଫିରୋଜପୁର ନାଲା' ମେହ୍ରବାଟେ ପର୍ବତ ଉପରୁ ଦେଖିଲେ ଚତୁର୍ଦ୍ଦିଗରେ ପର୍ବତ ପ୍ରାଚୀର ମଧ୍ୟରେ ଏହି ନାଲା ଆଲୋଡ଼େ ହିଁ କାଶ୍ମୀରର ବିସ୍ତୀର୍ଣ୍ଣ ସମତଳ ଉପତ୍ୟକାର ମନୋରମ ଦୃଶ୍ୟ ଦେଖାଯାଏ।

ପ୍ରାୟ ବାରଟା ବେଳେ ଗୁଲ୍‌ମାର୍ଗରେ ପହଞ୍ଚିଲୁ। ଗୁଲ୍‌ମାର୍ଗ୍‌ର ଅର୍ଥ ହେଉଛି, ଫୁଲର ପଡ଼ିଆ। ପୂର୍ବକାଳରେ ଏହା ଗୌରିମାର୍ଗ ବୋଲି କୁହାଯାଉଥିଲା। କିନ୍ତୁ ଷୋଡ଼ଶ ଶତାବ୍ଦୀରେ ସୁଲତାନ୍ ୟୁସୁଫ୍ ସାହ ଏହାର ନାମ ପରିବର୍ତ୍ତନ କରି ଗୁଲମାର୍ଗ ନାମ ଦେଇଥିଲେ ବୋଲି କହନ୍ତି। ସମୁଦ୍ର ପତ୍ତନରୁ ଏହାର ଉଚ୍ଚତା ଆଠହଜାର ପାଞ୍ଚ ଶହ ଫୁଟ୍। ଆମେ ସେଠାରେ ପହଞ୍ଚିବା ସମୟରେ ଫୁଲ ଋତୁ ଶେଷ ହୋଇ ଯାଇଥିଲେ ସୁଦ୍ଧା ଗୁଲ୍‌ମାର୍ଗରେ ବିସ୍ତୀର୍ଣ୍ଣ ପ୍ରାନ୍ତର ଘାସ ଓ ପାଟଳ ରଙ୍ଗର ଫୁଲରେ ସୁନ୍ଦର ଦିଶୁଥିଲା। ଏହି ବିସ୍ତୀର୍ଣ୍ଣ ପ୍ରାନ୍ତରର ଏକ ଅଞ୍ଚଳେ ଗୁଲ୍‌ମାର୍ଗ ସହରର ଘର ଓ ହୋଟେଲମାନ ବିବିଧବର୍ଣ୍ଣର ପୁଷ୍ପଶୋଭିତ ଉଦ୍ୟାନରେ ସୁସଜ୍ଜିତ ହୋଇପରି ଦେଖାଯାଉଥାଏ ଓ ଅନ୍ୟ ଅଞ୍ଚଳେ ଅନତିଦୂରେ ପର୍ବତ ଦେବଦାରୁ ଜାତୀୟ ପାଇନ୍ ଆଦି ବୃକ୍ଷ ଦ୍ୱାରା ଘେରି ହୋଇ ସୁନ୍ଦର ଦେଖାଯାଉଥାଏ। ଆମେ ସେଠାରେ ହୋଟେଲ୍‌ରେ ମଧ୍ୟାହ୍ନ ଭୋଜନ ପାଇଁ ଅର୍ଡର ଦେଇ ସେଠାରୁ ଚାରି ମାଇଲ ଆଗକୁ ଥିବା ଖିଲନ୍‌ମାର୍ଗ ଅଭିମୁଖେ ଯାତ୍ରା କଲୁ। ଖିଲନ୍‌ମାର୍ଗ ସମୁଦ୍ର ପତ୍ତନରୁ ଦଶ ହଜାର ଫୁଟ ଉପରେ ଅବସ୍ଥିତ ଏକ ବିସ୍ତୃତ ସମତଳ ପ୍ରାନ୍ତର। ଗୁଲ୍‌ମାର୍ଗରୁ ଖିଲନମାର୍ଗକୁ ଯାଇଥିବା ରାସ୍ତା ଭଲ ନୁହେଁ ଓ ଏହା ଏକ ଘନ ଦେବଦାରୁ ଜଙ୍ଗଲ ମଧ୍ୟ ଦେଇ ବେଶୀ ଗଡ଼ାଣିଆ ରାସ୍ତା ଦେଇ ଯାଇଛି। ବାଟରେ ହଳଦିଆ, ନେଳିଆ, ବାଇଗଣି ଆଦି ନାନା ଜାତିର ଅଜଣା ସ୍ୱଭାବଜାତ ଫୁଲଗଛ ଦେଖାଯାଏ। ଆମେ ଯେତେବେଳେ ଖିଲନ୍‌ମାର୍ଗର ସମତଳ ପ୍ରାନ୍ତରରେ ପହଞ୍ଚିଲୁ ସେତେବେଳେ ଆମେ ପୃଥିବୀର ଛାତ ଉପରେ ପହଞ୍ଚିଲା ପରି ମନେ ହେଲା। ଦୂର ଉତ୍ତର

ଦିଗରେ ନଙ୍ଗା ପର୍ବତର ଅଭ୍ରଂକଷ ଶୃଙ୍ଗ କୁହୁଡ଼ିଆ ମେଘ ମଣ୍ଡଳରେ ଲୁଚକାଳି ଖେଳୁଥିଲା । ପଶ୍ଚିମରେ ଅତି ନିକଟରେ ଫିର ପଞ୍ଜାଲ୍ (ପାଞ୍ଚାଲ ?) ପର୍ବତର ତୃଣଭୂମି ସୂର୍ଯ୍ୟକରଶାଣିତ ଏକ ବିରାଟ ତୁଷାର ସ୍ତୂପ ଆଡ଼େ ଚାହିଁଥିଲା । ଆଉ ପୂର୍ବ ଦିଗରେ ଦେଢ଼ ହଜାର ଫୁଟ ତଳେ ଗୁଲମାର୍ଗର ସମତଳ ଉପତ୍ୟକା ଓ ତହିଁର ସେ ଆଡ଼େ ବହୁଦୂରରେ ହରମୁଖ ପର୍ବତ । ସେଠାରେ ସାମାନ୍ୟ ଜଳଯୋଗ ପରେ ନଙ୍ଗାପର୍ବତକୁ ପୃଷ୍ଠଭୂମି କରି ଆମେ ନିଜର ଫଟୋ ଉଠାଇବାକୁ ଚେଷ୍ଟା କଲୁ । ମାତ୍ର ନଙ୍ଗାପର୍ବତ ବଡ଼ ଲଜ୍ଜାଶୀଳ । ତାର ଉଲଙ୍ଗତାକୁ ଏକ ଲଜ୍ଜାଶୀଳା ନବବଧୂ ପରି ମେଘର ଅବଗୁଣ୍ଠନରେ ଆବୃତ କରି ରଖିଥାଏ । କେତେକାଳ ପରେ ତୁଷାରାବୃତ ଶିଖରରୁ ମେଘାବଗୁଣ୍ଠନର କ୍ଷୀଣ ଉନ୍ମୋଚନ ପରେ ଆମେ ଫଟୋ ଉଠାଇଲୁ । କିନ୍ତୁ ପରେ ଦେଖାଗଲା ଫଟୋର ପୃଷ୍ଠ ଭୂମିରେ ନଙ୍ଗାପର୍ବତର ଚିହ୍ନବର୍ଣ୍ଣ ନାହିଁ ।

ଫଟୋ ଉଠାଇ ଆମେ ଗୁଲମାର୍ଗକୁ ବାହାରିଲୁ । ମୁଁ ଶୁଣିଲି ଶୀତ ଦିନରେ ଯେତେବେଳେ ଖୁବ୍ ବରଫପଡ଼େ ସେହି ସମୟରେ ଏଠାରୁ ଗୁଲ୍‌ମାର୍ଗକୁ ସ୍କେଟିଂ କରି ଲୋକେ ଯାଆନ୍ତି ଓ ଛଅମାଇଲ ବାଟ ସାମାନ୍ୟ କେତେ ମିନିଟରେ ଯିବା ସମ୍ଭବ ହୁଏ । ଆମକୁ ଫେରିବାକୁ ଦେଢ଼ଘଣ୍ଟା ସମୟ ଲାଗିଲା ।

ଗୁଲ୍‌ମାର୍ଗ ହେଉଛି ଦୁନିଆର ସର୍ବୋଚ୍ଚ ଗଲଫକୋର୍ସ । ଏଠାରେ ସମତଳ ପଡ଼ିଆ ଥିବା ଯୋଗୁଁ ଗଲ୍‌ଫ ଖେଳ ବଡ଼ ଲୋକ ପ୍ରିୟ— ଅବଶ୍ୟ ଖେଳାଳୀ ଅଭିଜାତମାନଙ୍କ ମଧ୍ୟରେ ଏବେ ଏଠାରେ ମହାଜାଗତିକ ରଶ୍ମି ଗବେଷଣା ପାଇଁ ଏକ ଅନୁଷ୍ଠାନ ଖୋଲାଯାଇଛି । ଆମେ ଗୁଲମାର୍ଗରେ ମଧ୍ୟାହ୍ନ ଭୋଜନ ପରେ ପ୍ରାୟ ସାଢ଼େ ତିନିଟା ବେଳେ ଟଙ୍ଗ୍‌ମାର୍ଗ ଅଭିମୁଖରେ ଯାତ୍ରା କରି ସନ୍ଧ୍ୟା ସମୟରେ ଶ୍ରୀନଗରରେ ପହଞ୍ଚିଲୁ ।

( ତିନି )

ତହିଁ ଆର ଦିନ ସକାଳେ ଆମ୍ଭେମାନେ ପହଲ୍‌ଗାମ୍ ଅଭିମୁଖରେ ଯାତ୍ରା କଲୁ । ଅମରନାଥ ତୀର୍ଥକୁ ପହଲ୍‌ଗାମରୁ ଯିବାକୁ ହୁଏ । ଆମ ବସ୍‌ଟି ଦର୍ଶକ ବସ୍ ହୋଇଥିବାରୁ ରାସ୍ତାରେ ଅନେକ ଦର୍ଶନୀୟ

ସ୍ଥାନମାନଙ୍କରେ ରହିଲୁ । ତହିଁ ମଧ୍ୟରୁ କୁକୁରନାଗ—(ନାଗ ଶବ୍ଦର ଅର୍ଥ ହେଉଛି ଝରଣା—ଏହାକୁ ଚଶମା ମଧ୍ୟ କୁହାଯାଏ) ପ୍ରଥମରେ ଗଲୁ । ତା ପରେ ଅଚ୍ଛାବଲ ବା ଅକ୍ଷୟବଲ୍ (ବଲ୍ ଶବ୍ଦର ଅର୍ଥ ଝରଣା)ରେ ମଧ୍ୟାହ୍ନ ଭୋଜନ କଲୁ । ଏଠାରେ ଝରଣାରେ ଶାହଜାହାନଙ୍କ ଝିଅ ଜାହାନାରା ବେଗମ୍ ଗୋଟିଏ ପ୍ରମୋଦ ଉଦ୍ୟାନ ନିର୍ମାଣ କରାଇଥିଲେ । ଏଠାରେ ମାଛିଆ ଓ ଇନ୍ଦ୍ରଧନୁ ରଙ୍ଗର ଟ୍ରାଉଟ୍ ମାଛ ଚାଷ କରାଯାଏ । ଟ୍ରାଉଟ୍ ମାଛ ସ୍କଟ୍‌ଲଣ୍ଡ ଭଳିଆ ଶୀତ ପ୍ରଧାନ ଦେଶରେ ରହନ୍ତି । କାଶ୍ମୀରର ଅଧିକାଂଶ ସ୍ଥଳରେ ଝରଣାମାନଙ୍କରେ ଟ୍ରାଉଟ୍‌ମାଛ ଚାଷ କରାଯାଏ । ଖାଦ୍ୟ ହିସାବରେ କାଶ୍ମୀରରେ ଟ୍ରାଉଟ୍‌ମାନଙ୍କର ସୁନାମ ଅଛି । ଆମେ ଯେଉଁଦିନ କାଶ୍ମୀର ଯାତ୍ରା ଶେଷ କରି ପଠାନକୋଟରେ ପହଞ୍ଚିଲୁ, ସେ ଦିନ ମୁଁ ଶୁଣିଲି ଜଣେ ବଙ୍ଗାଳୀ ଯାତ୍ରୀଙ୍କୁ ତାଙ୍କର ଜଣେ ବନ୍ଧୁ ନିମ୍ନ ପରାମର୍ଶ ଦେଉଥିଲେ, 'ତୁମେ ଯଦି କାଶ୍ମୀର ଯାଇ ଟ୍ରାଉଟ୍‌ମାଛ ଖାଇ ନାହିଁ, ତେବେ ତୁମର କାଶ୍ମୀର ଯାତ୍ରା ବୃଥା ।”

ଅଚ୍ଛାବଲ୍‌ରୁ ଯାଇ ବାବନ୍‌ଗାଁରେ ପହଞ୍ଚିଲୁ । ଏଠାରେ ଗୋଟିଏ ସ୍ରୋତ ଝରଣା ଉପରେ ଶିବ ମନ୍ଦିର ଓ ତହିଁ ପାଖରେ ଗୋଟିଏ ମସ୍‌ଜିଦ୍ ଲଗା ଲଗି ଅଛି । ଏହି ଝରଣା ହେଉଛି ମାର୍ତ୍ତଣ୍ଡ ଝରଣା ।

ଏହିଠାରୁ ଦୁଇମାଇଲ ଦୂରରେ ମାର୍ତ୍ତଣ୍ଡ—ଅଧୁନିକ ନାମ 'ମଟନ୍' । କାହିଁ ଅଦିତି ଦେବତାଙ୍କ ଜ୍ୟେଷ୍ଠ ପୁତ୍ର ସୂର୍ଯ୍ୟଦେବ ଆଉ କାହିଁ ମେଣ୍ଢାମାଂସ । ଏଠାରେ ମାର୍ତ୍ତଣ୍ଡ ବା ସୂର୍ଯ୍ୟଦେବଙ୍କ ମନ୍ଦିରର ଭଗ୍ନାବଶେଷ ରହିଛି । ଏହା ଖ୍ରୀଷ୍ଟ ପୂର୍ବ ତିନିହଜାର ବର୍ଷ ପୂର୍ବେ ରାମଦେବଙ୍କ ଦ୍ୱାରା ନିର୍ମିତ ହୋଇଥିଲା ଏବଂ ଅଷ୍ଟମ ଶତାବ୍ଦୀରେ ରାଜା ଲଳିତାଦିତ୍ୟଙ୍କ ଦ୍ୱାରା ସଂସ୍କୃତ ହୋଇଥିଲା ବୋଲି କୁହାଯାଏ । ଏ ମନ୍ଦିର ଧ୍ୱଂସସ୍ତୂପରେ ବହୁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ପ୍ରତ୍ନତାତ୍ତ୍ୱିକ ପଣ୍ଡିତ ପ୍ରଶଂସା କରିଛନ୍ତି । ଏଠାରେ ମାର୍ତ୍ତଣ୍ଡ ଦେବଙ୍କର ଆଧୁନିକ ମନ୍ଦିର ଗୋଟିଏ ମଧ୍ୟ ଅଛି ।

ଆମେ ପହଲଗାଁରେ ପହଞ୍ଚିଲୁ ପ୍ରାୟ ତିନିଟା ବେଳେ, ପହଲଗାଁ ଅମରନାଥ ଯାତ୍ରାର ଆରମ୍ଭ ସ୍ଥାନ ହୋଇଥିବାରୁ ଓ ତହିଁ ଆରଦିନ ସକାଳୁ ପ୍ରାୟ ବାରହଜାର ଯାତ୍ରୀ ସେଠାରୁ ଯାତ୍ରା ଆରମ୍ଭ କରିବାର

କଥା ଥିବାରୁ ସେଠାରେ ଭୀଷଣ ଭିଡ଼ ହୋଇଥିଲା । ଯାତ୍ରୀମାନଙ୍କର ସୁବିଧା ବନ୍ଦୋବସ୍ତ ପାଇଁ କାଶ୍ମୀର ସରକାରଙ୍କ ତରଫରୁ ଗୋଟିଏ ଅଫିସ ଖୋଲା ଯାଇଥିଲା । ଘୋଡ଼ା, କୁଲି, ଡାଣ୍ଡି ଆଦି ବ୍ୟବସ୍ଥା ଏହି ଅଫିସ ତରଫରୁ କରାଯାଉଥିଲା । କାଶ୍ମୀରର ପ୍ରଧାନମନ୍ତ୍ରୀ ବକ୍‌ସି ଗୁଲାମ ମହମ୍ମଦ ସେହିଦିନ ନିଜେ ପହଲଗାମ ଆସି ଯାତ୍ରୀମାନଙ୍କର ସୁବିଧା ବିଷୟରେ ବୁଝିଥିଲେ ।

ଏଠାରେ ଡାଣ୍ଡି ବା ଘୋଡ଼ାପାଇଁ ଯାହା କିଛି ଟଙ୍କା ଧାର୍ଯ୍ୟ ହୁଏ, ତାହା ସରକାରୀ ଅଫିସରଙ୍କୁ ଦେବାକୁ ପଡ଼େ ଓ ସେମାନେ କୁଲି ଓ ଘୋଡ଼ାବାଲାମାନଙ୍କୁ ନିର୍ଦ୍ଦିଷ୍ଟ ହାରରେ ଟଙ୍କା ଦିଅନ୍ତି । ଅମରନାଥ ଯାତ୍ରାରେ ସରକାରୀ କଟକଣା ବେଶୀ ହେଉଥିବାର ଆମେ ଅନୁଭବ କଲୁ ।

ପହଲଗାଁ ପରେ ରାସ୍ତାରେ ରହିବା ପାଇଁ ଉପଯୁକ୍ତ ଆଶ୍ରୟସ୍ଥଳ ପର୍ଯ୍ୟାପ୍ତ ନଥିବାରୁ ତମ୍ବୁ, ଲାଠି, ବର୍ଷାତିକୋଟ ଆଦି କେତେ ଅତ୍ୟାବଶ୍ୟକୀୟ ଦ୍ରବ୍ୟ କିଣିବାରେ ଓ ଭଡ଼ା କରିବାରେ ସେ ଦିନଟା ଚାଲିଗଲା । ଆମେ ଗୋଟିଏ ଶିଖ୍ ହୋଟେଲରେ ସେ ଦିନ ରାତିଟା କଟାଇଲୁ ।

ପହଲଗାଁ ଗୋଟିଏ ଛୋଟ ଅଥଚ ଭଲ ସହର, ସମୁଦ୍ର ପତ୍ତନରୁ ବାସ୍ତରୀ ଶହ ଫୁଟ ଉଚ୍ଚରେ ଅବସ୍ଥିତ । ଏହି ସହର ପାଖରେ ଲିଡ଼ର୍ ବା ଲମ୍ବୋଦରୀ ନଦୀ ପ୍ରବାହିତ ହେଉଛି । ଆମେ ପହଲଗାଁରେ ପହଞ୍ଚିଲା ବେଳେ ଖରା ଯୋଗୁଁ ଗରମ ହେଉଥିଲା ଓ ଯାତ୍ରା କାଳରେ ଏପରି ଖରା ହେଲେ ଉଚ୍ଚ ସ୍ଥାନରେ ଶୀତ ଆମକୁ ବେଶୀ ବାଧିବ ନାହିଁ ବୋଲି ଆମେ ଆଶା କରିଥିଲୁ ।

ଅମରନାଥ ଯାତ୍ରାର ବିଶେଷତ୍ୱ ହେଉଛି; ଶ୍ରାବଣ ପୂର୍ଣ୍ଣିମାରେ ଦର୍ଶନପାଇଁ ଯେଉଁମାନେ ଯାଆନ୍ତି, ସେମାନଙ୍କୁ ଗୋଟିଏ ନିୟମ ମାନି ଚଳିବାକୁ ହୁଏ । ଏଠାର (ପହଲଗାଁର) ସନ୍ୟାସୀମାନଙ୍କ ଦ୍ୱାରା ଅମରନାଥକୁ ନିଆଯାଉଥିବା 'ଛଡ଼ି ସାହେବ' ଆଗରୁ କେହି ଯାଇ ପାରିବେ ନାହିଁ । ତେଇଶି ତାରିଖ ସକାଳୁ, ଛଡ଼ି ସାହେବ'ଙ୍କ ଯାତ୍ରା ପହଲଗାଁରୁ ଚନ୍ଦନବାଡ଼ିଯାଏ ଚାଲିବ । ତେଣୁ ବାଇଶି ତାରିଖରେ

କେହି ପହଲଗାଁରୁ ଆଗକୁ ଯାଇପାରିବେ ନାହିଁ । ଏ ନିୟମ ନ ଥିଲେ ଆମେ ହୁଏତ ଭିଡ଼ରୁ ରକ୍ଷା ପାଇବା ପାଇଁ ଦିନେ ଦୁଇଦିନ ଆଗରୁ ଆମର ଯାତ୍ରାର କାର୍ଯ୍ୟ ନିର୍ଘଣ୍ଟ ବ୍ୟବସ୍ଥା କରିଥାନ୍ତୁ ।

ଆମର ଯାତ୍ରା ସମୟରେ ଭଲ ପାଗ ହେବ ବୋଲି ଆଶା କରିଥିଲୁ । ମାତ୍ର ବାଇଶ ତାରିଖ ରାତିରୁ ବୃଷ୍ଟି ଆରମ୍ଭ ହେଲା ଓ ତେଇଶ ତାରିଖ ସକାଳେ ଖୁବ୍ ଶୀତ ହେଲା । ଆମେ ତିନିଜଣ ବନ୍ଧୁ ଶ୍ରୀ ବୈରାଗୀ ଦ୍ୱିବେଦୀ, ଶ୍ରୀ ରଘୁନାଥ ପ୍ରଧାନ ଓ ମୁଁ ପଦବ୍ରଜରେ ଅମରନାଥ ପର୍ଯ୍ୟନ୍ତ ଯିବାର ସ୍ଥିର କରିଥିଲୁ । ସକାଳେ ଘୋଡ଼ାରେ ଜିନିଷପତ୍ର ପଠାଇବାର ବ୍ୟବସ୍ଥା କରିବାରେ ଡେରି ହେବାରୁ ଆମେ ସାଢ଼େ ଆଠଟା ପରେ ଚନ୍ଦନବାଡ଼ି ଅଭିମୁଖେ ଯାତ୍ରା ଆରମ୍ଭ କଲୁ । ବର୍ଷା ହେଉଥାଏ । ଅଳ୍ପବାଟ ଚାଲିଲା ପରେ ମୁଁ ଦେଖିଲି କାଦୁଅ ଯୋଗୁ ଡିଲ୍ ଜୋତା ମାଡ଼ି ଚାଲିବାରେ ମୋର ବିଶେଷ ଅସୁବିଧା ହେଉଛି । ଜୋତା ଖୋଲିଲେ ସର୍ଦ୍ଦି ହେବାର ଆଶଙ୍କା କିନ୍ତୁ ଅନନ୍ୟୋପାୟ ହୋଇ ଜୋତା ଖୋଲି ଖାଲି ପାଦରେ ବିଶେଷ କାଦୁଅରେ ଚାଲିବାକୁ ପଡ଼ିଲା । ଏ ଯାତ୍ରା ଥିଲା ଆମର ପଥିକତାର ପ୍ରଥମ ପରୀକ୍ଷା । କାଦୁଅରେ ଚାଲିବାରେ ବିଶେଷ ଅସ୍ୱସ୍ତି ବୋଧ ହେଉଥିଲେ ସୁଦ୍ଧା ପାର୍ବତ୍ୟ ପଥୁରିଆ ଓ କାଦୁଅ ରାସ୍ତାରେ ଦଶମାଇଲ ଏ ଦିନ ଚାଲିବାକୁ ପଡ଼ିଲା । ଏ ଦଶମାଇଲ ରାସ୍ତା ଯିବାକୁ ଆମକୁ ପ୍ରାୟ ସାଢ଼େ ପାଞ୍ଚଘଣ୍ଟା ଲାଗିଲା ।

ବର୍ଷା ଯୋଗୁ ରାସ୍ତା ଉପରେ ବିଶେଷ ଦୃଷ୍ଟି ଦେବାକୁ ପଡ଼ୁଥିବା ଯୋଗୁ ମୁଁ ପ୍ରାକୃତିକ ଦୃଶ୍ୟ ଉପଭୋଗ କରିବାର ବିଶେଷ ସୁଯୋଗ ପାଇ ନଥିଲି । ଚନ୍ଦନବାଡ଼ିକୁ ରାସ୍ତା ଲିଡ଼ର୍ ନଦୀର କୂଳେ କୂଳେ ଯାଇଛି । ଚନ୍ଦନବାଡ଼ି ସମୁଦ୍ର ପତ୍ତନରୁ ସାଢ଼େ ନଅହଜାର ଫୁଟ ଉଚ୍ଚରେ ଅବସ୍ଥିତ । ପହଲଗାଁରୁ ତିନି ଚାରିମାଇଲ ପରେ ଉପରକୁ ଆଉ କୃଷି କାର୍ଯ୍ୟ ସମ୍ଭବ ନୁହେ । ଯେଉଁଠି କୃଷି ଓ ଅରଣ୍ୟର ସୀମାରେଖା, ସେଠାରେ ଭୋଗ ଓ ଯୋଗର ସୀମାରେଖା, ଗାର୍ହସ୍ଥ୍ୟ ଓ ବାନପ୍ରସ୍ଥର ସୀମାରେଖା ବୋଲି ମୁଁ ମନେ ମନେ ଭାବୁଥିଲି । ପର୍ବତ ବେଷ୍ଟିତ ଏକ ସମତଳ ପ୍ରାୟ ଉପତ୍ୟକାରୁ କୁଟିଳ ଅଥଚ ପ୍ରଶସ୍ତ ଗିରିପଥ ଦେଇ ଆମେ

ଶହ ଶହ ଯାତ୍ରୀ ଚାଲିଥାନ୍ତି ଏକ ଲକ୍ଷ୍ୟ, ଏକ ଧ୍ୟାନରେ । ଆମର ଦକ୍ଷିଣ ଦିଗରେ ନଦୀର ସେପାଖେ ବିରାଟ ପ୍ରାଚୀର ଭଳି ପାଇନ୍ ବୃକ୍ଷରାଜିଶୋଭିତ, ଜଳପ୍ରପାତମୁଖରିତ ଶ୍ୟାମଛବି ପର୍ବତ ନଦୀର କଲ୍ଲୋଳକୁ ପ୍ରତିଧ୍ୱନିତ କରୁଥାଏ । ଆମର କଷ୍ଟସାଧ୍ୟ ଯାତ୍ରା ପାଇଁ ଆଶ୍ୱାସବାଣୀ ପରି ଶୁଭୁଥାଏ । ସ୍ୱର୍ଗକୁ ଯିବା ପୂର୍ବରୁ ଯେପରି ନରକର କର୍ଦ୍ଦମାକ୍ତ ପଥ ଦେଇ ଯିବାକୁ ପଡ଼ିଥାଏ ବୋଲି ପୁରାଣାଦିରେ କଳ୍ପନା କରାଯାଇଛି ସେହିପରି ଅମରନାଥ ଦର୍ଶନ ପୂର୍ବରୁ ଆମର ପୂର୍ବସଞ୍ଚିତ ପାପ ଯେପରି କର୍ଦ୍ଦମରୂପେ ଆମର ପାଦତଳେ ଥାଏ ଓ ଆମେ ତାହାକୁ ପାରି ହୋଇ ଚାଲିଥାଉଁ । ଆମକୁ ପୂର୍ବରୁ ଆଶ୍ୱାସନା ଦିଆଯାଇଥିଲା ଯେ ପରବର୍ତ୍ତୀ ପଥପରି ପହଲ୍‌ଗାଁରୁ ଚନ୍ଦନବାଡ଼ି ଯାଏ ପଥ ଏତେ ଦୁର୍ଗମ ନୁହେଁ । ଦଶମାଇଲ ରାସ୍ତାରେ ଆମକୁ କେବଳ ଦୁଇ ହଜାର ଫୁଟ୍ ଉପରକୁ ଉଠିବାକୁ ହେବ । ଆମର ଏଇ ପ୍ରଥମ ଦିନର ଯାତ୍ରା ପ୍ରାୟ ଦିନ ଦୁଇଟାରେ ଶେଷ ହେଲା । ଚନ୍ଦନ ବାଡ଼ିରେ ଆମେ ତମ୍ବୁ ପକାଇ ରହିଲୁ ।

ସେ ଦିନ ରାତିରେ ଶୋଇଲା ବେଳେ କାବ୍ୟ ଓ ସଙ୍ଗୀତଚର୍ଚ୍ଚା ହେଲା । ଶ୍ରୀ ରଘୁନାଥ ପ୍ରହରାଜ ବୈଦେହୀଶ ବିଳାସରୁ କେତେକ ପଦ୍ୟ ଆବୃତ୍ତି କରି ଓ ଅର୍ଥ କରି ଆମକୁ ଶୁଣାଇଲେ । ବାସ୍ତବିକ ଓଡ଼ିଶାର ଆଧୁନିକ ସାହିତ୍ୟରେ ଯେତେ ଚମତ୍କାର ଥିଲେ ମଧ୍ୟ, ପୁରପଲ୍ଲୀରେ ଭଞ୍ଜ ହିଁ ଉଦିତ ଅଦ୍ୱିତୀୟ, ଅତୁଳନୀୟ କବି—କବିସମ୍ରାଟ । ଗଙ୍ଗାଧର ମେହେରଙ୍କର କେତେକ ପଦ୍ୟ ଆବୃତ୍ତି କରାଗଲା ।

ସେ ଦିନଯାକ ଓ ରାତିରେ ମଧ୍ୟ ପ୍ରାୟ ଅବିରାମ ବର୍ଷା ଚାଲିଥାଏ । ଏହା ପୂର୍ବରୁ ତମ୍ବୁରେ ଶୋଇବାର ଆମର ଅଭ୍ୟାସ ନ ଥିଲା । ରାସ୍ତାରେ ବିଛଣା ପତ୍ର ଓଦା ହୋଇ ଯାଇଥିଲା, ଆଜି ଆମେ ଉଚ୍ଚ ଅଞ୍ଚଳରେ ଥିଲୁ ବୋଲି ରାତିରେ ଖୁବ୍ ଶୀତ ଜଣା ପଡ଼ିଲା ।

ତହିଁ ଆରଦିନ ସକାଳେ ବର୍ଷା କମିଗଲା । ମାତ୍ର ରାସ୍ତାରେ ବରଫ ଯୋଗୁ ଯିବା ଅସୁବିଧା ହେବ ବୋଲି ସରକାରୀ କର୍ମଚାରୀମାନେ ...ଙ୍କୁ କାହାକୁ ଛାଡ଼ିଲେ ନାହିଁ । ଆମ ମନରେ ଘୋର ନୈରାଶ୍ୟ ...ତ ହେଲା । ଏତେ ଦୂର ଆସି ଯଦି ଏଠାରୁ ଫେରିବାକୁ ପଡ଼େ ତେବେ ଘୋର ଦୁଃଖର ବିଷୟ ହେବ ବୋଲି ଆମେ ଚିନ୍ତିତ ହେଲୁ । କିନ୍ତୁ

ଦିନ ଦଶଟା ବେଳେ ଆକାଶ ନିର୍ମଳ ହେଲା । ପ୍ରାୟ ବାରଟା ବେଳେ ଯାତ୍ରୀମାନେ ଯାତ୍ରା ଆରମ୍ଭ କଲେ । ଆମେ ମଧ୍ୟ ବାହାରିଲୁ ।

ଏ ଦିନର ଯାତ୍ରା ସବୁଠାରୁ କଠିନ ହେବ ବୋଲି ଆମେ ପୂର୍ବରୁ ଜାଣିଥିଲୁ । ଚନ୍ଦନବାଡ଼ିର ଅଳ୍ପଦୂର ପରେ ପିସ୍ସୁଘାଟି ବୋଲି ଏକ ଅତଟପ୍ରାୟ ଘାଟି ଅଛି । ଏହା ଏକମାଇଲ ମଧ୍ୟରେ ପ୍ରାୟ ଦୁଇହଜାର ଫୁଟ୍ ଉପରକୁ ଉଠିଯାଇଛି । ଏହି ଏକମାଇଲ ମଧ୍ୟରେ ଧୀରେ ଧୀରେ ଉଚ୍ଚ ଦେବଦାରୁ ଜାତୀୟ ବୃକ୍ଷର ଜଙ୍ଗଲ ଶେଷ ହୋଇ କେବଳ ଗୁଳ୍ମ ଓ ଲତା ଦେଖାଯାଏ । ଏହି ଘାଟିରେ ଯାତ୍ରୀମାନଙ୍କର ଶାରୀରିକ ଶକ୍ତି ଓ ସହନଶୀଳତାର ପ୍ରକୃତ ପରୀକ୍ଷା ହୁଏ । ପଥ ଏତେ ଅତଟ ଓ ଏତେ ସଙ୍କୀର୍ଣ୍ଣ ଯେ ଯେଉଁ ଯାତ୍ରୀମାନେ ଘୋଡ଼ାରେ ବା ଡାଣ୍ଡିରେ ଯାଉଥାନ୍ତି ସେମାନେ ମଧ୍ୟ ବିପଦର ଆଶଙ୍କା କରି ଏଠାରେ ଓହ୍ଲାଇ ଚାଲି କରି ଯିବାକୁ ପ୍ରାୟ ବାଧ୍ୟ ହୁଅନ୍ତି । ସଙ୍କୀର୍ଣ୍ଣ ଗିରିପଥରେ ପଦଯାତ୍ରୀମାନଙ୍କ ପଛେ ମାଲବାହୀ କୁଲି ଓ ଘୋଡାମାନେ ଚାଲି ଆସିଲା ବେଳେ 'ହୋଶ୍, ହୋଶ୍' ଶବ୍ଦ କରି ସାବଧାନ କରି ଦେଇ ଆଗକୁ ମାଡ଼ିଯାନ୍ତି ଓ ସେଥିପାଇଁ ଗତି ବ୍ୟାହତ ହୁଏ ଓ ପଦଯାତ୍ରୀମାନଙ୍କର ପଦେ ପଦେ ବିପଦର ସମ୍ଭାବନା ଥାଏ ।

ପ୍ରବାଦ ଅଛି ଯେ ପିସ୍ସୁଘାଟିରେ ପୂର୍ବକାଳରେ ଦେବତା ଓ ଅସୁରମାନଙ୍କ ମଧ୍ୟରେ ସଂଗ୍ରାମ ହୋଇଥିଲା । ଶେଷରେ ଦେବତାମାନଙ୍କର ଜୟ ହେଲା ଓ ଅସୁରମାନେ ପେଷି ହୋଇ ଏହିଠାରେ ପର୍ବତ ପ୍ରମାଣ ମରିଥିଲେ ବୋଲି ଏହାର ନାମ 'ପିସ୍ସୁଘାଟି' । ଆମ ମନରେ ଓ ବାହାରେ ସବୁବେଳେ ଦେବତା ଓ ଅସୁରମାନଙ୍କ ମଧ୍ୟରେ ସଂଗ୍ରାମ ଚାଲିଛି । ଦୟା ଓ ଘୃଣା, ପାପ ଓ ପୁଣ୍ୟ, କରୁଣା ଓ ହିଂସା, ଶ୍ୱେତ ଓ ଲୋହିତ ରକ୍ତ କଣିକା ଓ ରୋଗର ଜୀବାଣୁ, ସଧର୍ମ ଓ ଧର୍ମାନ୍ଧତା, ଜ୍ଞାନ ଓ କୁସଂସ୍କାର, ବିଶ୍ୱାସ ଓ କପଟ ମଧ୍ୟରେ ଆବହମାନ କାଳରୁ ଯୁଦ୍ଧ ଚାଲି ଆସିଛି । କିନ୍ତୁ ସବୁବେଳେ ସତ୍ୟର, ନ୍ୟାୟର, ଧର୍ମର ଜୟ ହୁଏ ନାହିଁ । ପୃଥିବୀର ଇତିହାସର ଅଗଣିତ ପୃଷ୍ଠାରେ ସତ୍ୟ, ଅସତ୍ୟ ଆଗରେ ମୁଣ୍ଡ ନୁଆଁଇବାକୁ ବାଧ୍ୟ ହୋଇଛି । ତଥାପି ଆଶାବାଦୀ ଆମେ କହୁ "ସତ୍ୟମେବ ଜୟତେ" । ଆଜି ସୁଦ୍ଧା ନ୍ୟାୟ ବ୍ୟଭିଚାରର ଜୟଗାନ କରିବାକୁ ବାଧ୍ୟ ହେଉଛି । ବଳଶାଳୀ ଶାନ୍ତିର ହତ୍ୟା

କରୁଛୁ, ତଥାପି ଆମର ଧର୍ମଶାସ୍ତ୍ର ଲେଖୁଛି "The meek shall inherit the earth" ଅନ୍ୟ ଆଡ଼େ ବିଜ୍ଞାନ ଡାକୁଛି "Survival of the fittest" । ଏହି ଆଣବିକ ଯୁଗରେ କେଉଁ ଉକ୍ତିଟି ସତ ? ଯୁଗେ ଯୁଗେ ଧର୍ମର ଗ୍ଲାନି ଓ ଅଧର୍ମର ଅଭ୍ୟୁତ୍‌ଥାନ ସଙ୍ଗେ ମନୁଷ୍ୟ ମନରେ ଜାଗି ଉଠେ ଆଶା, ପୁରୁଷୋତ୍ତମଙ୍କ ନବଅବତାର ପାଇଁ । ଅଥବା ବହୁ ଶତାବ୍ଦୀ ଧରି ଅତ୍ୟାଚାରିତ ଏ ରାଜ୍ୟର ଲୋକେ ବାସ୍ତବରୁ ମୁକ୍ତି ଲଭିବା ପାଇଁ ଲୋକ ବସତିରୁ ବହୁଦୂରରେ, ବାସ୍ତବ ଜଗତରୁ ବହୁ ଦୂରରେ, ବହୁ ଉର୍ଦ୍ଧ୍ୱରେ ଏଠାରେ ଆସୁରୀ ଶକ୍ତି ଉପରେ ଦୈବୀ ଶକ୍ତିର ବିଜୟର କଳ୍ପନା ମାତ୍ର କରିଥିଲେ ।

ପିସ୍‌ସୁ ଘାଟି ଉପରକୁ ଉଠିବାକୁ ଆମକୁ ପ୍ରାୟ ଦୁଇଘଣ୍ଟା ଲାଗିଥିଲା ପ୍ରଧାନତଃ ଭିଡ଼ ଯୋଗୁ । ଏହା ପରେ ଆମେ କିଛି ସମୟ ଏକ ସମତଳ ପ୍ରାନ୍ତରରେ ବିଶ୍ରାମ ନେଇ ପୁଣି ଚାଲିଲୁ । ସେତେବେଳେ ଆକାଶ ନିର୍ମଳ ଥିଲା । ରାସ୍ତା ଖରାପ ଥିବା ଗୁଜବ, ଯାହା ମୁକାମରେ ଶୁଣିଥିଲୁ, ପିସ୍‌ସୁ ଘାଟି ଚଢ଼ିଲା ବେଳେ ତାହା ସମ୍ପୂର୍ଣ୍ଣ ଅମୂଳକ ବୋଲି ବୁଝି ପାରିଲୁ ।

ପିସ୍‌ସୁ ଘାଟି ଉପର ଅଞ୍ଚଳରେ ଆଉ ପର୍ବତରେ ବଡ଼ ଗଛ ଦେଖାଯାଏ ନାହିଁ । ଆମ ରାସ୍ତାର ଡାହାଣ ଆଡ଼େ ଲିଡର୍ ନଦୀ ବହୁଥାଏ । ଗୋଟିଏ ସ୍ଥାନରେ ନଦୀ ସ୍ରୋତ ଉପରେ ଗୋଟିଏ ବଡ଼ ବରଫର ଗୋଟିଏ ବଡ଼ ପୋଲ ଦେଖାଗଲା । ସତେ ଯେପରି ଏକ ବିରାଟ ଦୈତ୍ୟର ମୁହଁରୁ ଜଳସ୍ରୋତ ଅବିରାମ ଗତିରେ ବହି ଚାଲିଛି । ପିସ୍‌ସୁ ଘାଟି ପରେ ପଥ ଆଉ ଏତେ ଦୁର୍ଗମ ନୁହେଁ, କିନ୍ତୁ ଏଠାରେ ରାସ୍ତା ଗୋଟିଏ ମାଇଲକୁ ତିନିହଜାର ଗଜ ପରି ଜଣା ପଡ଼ୁଥାଏ । ଆମେ କ୍ଳାନ୍ତ ହୋଇ ପଡ଼ିଥିଲୁ । ଆଠମାଇଲ ରାସ୍ତା ଯିବାକୁ ଆମକୁ ପ୍ରାୟ ଛଅଘଣ୍ଟା ଲାଗିଥିଲା । ଆମେ ପ୍ରାୟ ପାଞ୍ଚଟା ବେଳେ ଶେଷନାଗ ହ୍ରଦ କୂଳରେ ପହଞ୍ଚିଲୁ । ଚତୁର୍ଦ୍ଦିଗରେ ଉଚ୍ଚ ପର୍ବତ ଦ୍ୱାରା ପରିବେଷ୍ଟିତ ଓ ତୁଷାରନଦୀ ଦ୍ୱାରା ପରିପୁଷ୍ଟ ଏହି ହ୍ରଦ ବୈଶାଖ ମାସ ପର୍ଯ୍ୟନ୍ତ ବରଫ ହୋଇଥାଏ ଓ ବୈଶାଖ ମାସ ପରେ ବରଫ ତରଳି ଏହାର ଜଳାସ୍ତରଣ ଏକ ବିରାଟ ପଦ୍ମପତ୍ର ପରି ଶ୍ୟାମଳ।

ବର୍ଣ୍ଣ ଧାରଣ କରିଥାଏ । ଏହା ହ୍ରଦ ଲିଡ଼ର୍ ନଦୀର ଉଦ୍‌ଗମ ସ୍ଥଳ । ଆମେ କିଛି ସମୟ ଏହି ହ୍ରଦ ତୀରରେ ବସି ହ୍ରଦ ଓ ନିକଟବର୍ତ୍ତୀ ତୁଷାରାବୃତ ପର୍ବତର ଶୋଭା ନିରୀକ୍ଷଣ କଲୁ । ଶେଷ ନାଗର ଉଚ୍ଚତା ସମୁଦ୍ର ପତ୍ତନରୁ ୧୧୭୦୦ ଫୁଟ୍ ଓ ହ୍ରଦର ବିସ୍ତୃତି ପ୍ରାୟ ଶତେକ ଏକର ହେବ । ଏ ହ୍ରଦଠାରୁ ପ୍ରାୟ ଏକ ମାଇଲ ଆଗରେ ଆମର ପରବର୍ତ୍ତୀ ବିଶ୍ରାମ ସ୍ଥଳ ବାବଜାନ୍‌ରେ ପହଞ୍ଚିଲୁ ପ୍ରାୟ ସାଢ଼େ ଛଅଟା ସମୟରେ ।

ଏ ସମୟରେ ଏ ଅଞ୍ଚଳରେ ସନ୍ଧ୍ୟା ହୁଏ ସାତଟା ପରେ । ଆମେ ସେଠାରେ ପହଞ୍ଚିଲା ସମୟରେ ଗୋଧୂଳିର ସ୍ୱର୍ଣ୍ଣ ରଶ୍ମି ଦୂର ପର୍ବତର ତୁଷାର ମୁକୁଟକୁ ସ୍ୱର୍ଣ୍ଣାଭ କରିଥିଲା ଓ ଅସ୍ତଗାମୀ-ରବି-କିରଣରେ ସେ ଦୃଶ୍ୟର ସୌନ୍ଦର୍ଯ୍ୟ ବାରମ୍ବାର ପରିବର୍ତ୍ତିତ ହେଉଥାଏ । କ୍ରମେ ଅନ୍ଧକାର ହେଲା । ଆକାଶରେ ତାରା ଦେଖାଗଲେ । ପୂର୍ବ ପର୍ବତର ଉପରକୁ ଉଠି ଶୁକ୍ଳ ତ୍ରୟୋଦଶୀର ତୁଷାର ଶୀତଳ ଚନ୍ଦ୍ର ଶୀତକୁ ଆହୁରି ଶାଣିତ କରୁଥିଲା । କିନ୍ତୁ ଆମର ବିଶ୍ରାମ ସ୍ଥଳରେ ବିଶ୍ରାମ କରିବାର ଉପାୟ ନଥିଲା । ଆମର ତମ୍ବୁ ଓ ବିଛଣାପତ୍ର ଚନ୍ଦନବାରିରୁ ପହଞ୍ଚି ନ ଥିଲା । ରାତି ସାଢ଼େ ସାତଟା, ଆଠଟା, ନଅଟା ହେଲା । ବରଫ୍ ଭଳିଆ ଶୀତରେ ଅନଭ୍ୟସ୍ତ ଆମ୍ଭମାନଙ୍କ ପକ୍ଷରେ ଏତେ ରାତି ପର୍ଯ୍ୟନ୍ତ ମୁକ୍ତ ଆକାଶ ତଳେ ଏତେ ଶୀତରେ ରହିବାର ଅବସ୍ଥା ଓ ଆଶଙ୍କା ଅବର୍ଣ୍ଣନୀୟ । ଆମେ ନିଜ ନିଜର ସ୍ୱାସ୍ଥ୍ୟ ବିଷୟରେ ଚିନ୍ତାକୁଳ ହେଲୁ । ରାତିରେ ଯଦି ତମ୍ବୁ ଓ ବିଛଣାପତ୍ର ନ ଆସେ ତେବେ ନିମୋନିଆ ରୋଗ ବା ଗୁରୁତର ସ୍ୱାସ୍ଥ୍ୟହାନି ହେବାର ସମ୍ଭାବନା । ଆମେ ବ୍ୟାକୁଳ ପରି ରାସ୍ତା ଆଡ଼କୁ ଅନାଉଥାଉଁ । କାତର ସ୍ୱରରେ ଅନାଗତ ଘୋଡ଼ାବାଲାମାନଙ୍କୁ ଉଦ୍ଦେଶ୍ୟ କରି ଡାକୁଥାଉଁ ।

ଆମର ଜିନିଷ ପତ୍ର ନ ଆସିବାର କାରଣ ଅନୁସନ୍ଧାନ କରିବାରେ ଜଣାଗଲା ଯେ ଆମେ ଯେତେବେଳେ ପିସୁ ଘାଟି ଦେଇ ଆସୁଥିଲୁ, ସେତେବେଳେ ଯାତ୍ରୀ ଗହଳି ବେଶୀ ହେବା ଯୋଗୁଁ ଜିନିଷପତ୍ର ଧରି ଆସୁଥିବା ଘୋଡ଼ାମାନଙ୍କୁ ସେଠାରେ ଅଟକାଇ ଦିଆଗଲା ଓ ଯାତ୍ରୀମାନେ ସମସ୍ତେ ଘାଟି ପାର ହେଲା ପରେ ମାଲପତ୍ର


Digitized by srujanika@gmail.com

ଛାଡ଼ିବାର ବ୍ୟବସ୍ଥା କରାଗଲା । ଏ ପ୍ରକାର ସରକାରୀ କଟକଣା ପାଇଁ ଆମେ କାଶ୍ମୀରର ସରକାରୀ ଅଫିସରମାନଙ୍କ ଉପରେ ବିରକ୍ତ ହେଲୁ । କିନ୍ତୁ ସେ ସମୟରେ କୌଣସି ଉପାୟ ନଥିଲା । ଶେଷକୁ ପ୍ରାୟ ଦଶଟା ବେଳେ ଆମର ଅଗ୍ନିମନ୍ତ୍ରା ସୁଦ୍ଧା ଯେତେବେଳେ ପ୍ରବଳ ଶୀତରେ କମ୍ପିବାକୁ ଲାଗିଲା, ସେତେବେଳେ ଆମେ ନଅଜଣ ଗୋଟିଏ ନିକଟବର୍ତ୍ତୀ ତମ୍ବୁରେ ଆଶ୍ରୟ ଭିକ୍ଷା କଲୁ । ସେ ତମ୍ବୁରେ ଉତ୍ତର ପ୍ରଦେଶର କେତେଜଣ ପ୍ରବାସୀ ଆମର ଯଥୋଚିତ ଅତିଥି ସତ୍କାର କରି ଶୀତବସ୍ତ୍ର ଓ ଋ ଅନ୍ନମାନଙ୍କୁ ଦେଲେ ଓ ତମ୍ବୁରେ ଶୋଇବା ସ୍ଥାନ ଅଭାବରୁ ସମସ୍ତେ ବସି ରାତିଯାପନ କରିବାର ସ୍ଥିର ହେଲା ।

ମନୁଷ୍ୟ ଯେତେବେଳେ ଆଶା ଭରସା ସମ୍ପୂର୍ଣ୍ଣ ଭାବରେ ହରାଇ ବସେ ସେତେବେଳେ ତାକୁ ଅପ୍ରତ୍ୟାଶିତ ସାଫଲ୍ୟ ମିଳେ । କୁରୁସଭାରେ ବିବସନ ବେଳେ ଦ୍ରୌପଦୀ ଯେତେବେଳେ ଶ୍ଳୀଳତାରକ୍ଷାର ସମସ୍ତ ଚେଷ୍ଟା ଛାଡ଼ି ଦୁଇହାତ ଟେକି ଭଗବାନଙ୍କୁ ଡାକିଥିଲେ, ସେତେବେଳେ ଭଗବାନ୍ ତାଙ୍କର ଲଜ୍ଜାନିବାରଣ କରିଥିଲେ । ଆମେ ସେ ରାତିରେ ଯେତେବେଳେ ସୁଖସ୍ୱାଚ୍ଛନ୍ଦ୍ୟର ସବୁ ଆଶା ବିସର୍ଜନ କରି ଉଜାଗର ରହିବା ପାଇଁ ସ୍ଥିର କଲୁ, ସେତେବେଳେ ପ୍ରାୟ ସାଢ଼େ ଏଗାରଟା ସମୟରେ ଆମର ତମ୍ବୁ ଓ ବିଛଣାପତ୍ର ଆସି ପହଞ୍ଚିଲା । ଆମେ ସ୍ୱସ୍ତିର ନିଃଶ୍ୱାସ ମାରି ଉତ୍ତର ପ୍ରଦେଶର ବନ୍ଧୁମାନଙ୍କୁ ସେମାନଙ୍କର ଆତିଥେୟତା ପାଇଁ ଧନ୍ୟବାଦ ଦେଇ ନିଜ ତମ୍ବୁରେ ଆଶ୍ରୟ ନେଲୁ । ସେ ରାତିର ଅବ୍ୟବସ୍ଥା ଯୋଗୁ ଦୁଇଜଣ ଶିଶୁ ଯାତ୍ରୀଙ୍କର ମୃତ୍ୟୁ ଘଟିଲା ବୋଲି ପରେ ଖବର ପାଇଲୁ ।

ତହିଁ ଆର ଦିନ ଶୁକ୍ଳ ଚତୁର୍ଦ୍ଦଶୀ ପଚିଶି ତାରିଖ । ଆକାଶ ମେଘାଚ୍ଛନ୍ନ ଥିଲା । ଆମେ ବାହାରିବାର ଅଧଘଣ୍ଟା ମଧ୍ୟରେ ବର୍ଷା ଆରମ୍ଭ ହେଲା ଓ ଧୀରେ ଧୀରେ ବଢ଼ିବାକୁ ଲାଗିଲା । ସଙ୍କୀର୍ଣ୍ଣ ରାସ୍ତାରେ ଘୋଡ଼ା, ଡାଣ୍ଡି ଓ ଲୋକର ଅବିରାମ ସ୍ରୋତ ମଝିରେ ଚାଲିଲା ସମୟରେ ଆଉ ଗୋଟିଏ ନୂଆ ବିପଦ ଦେଖାଗଲା । ରାସ୍ତା ଅତି ମାତ୍ରାରେ ପିଚ୍ଛିଳ ଥିଲା । ପଦେ ପଦେ ପଦସ୍ଖଳନର ଭୟ । ଏଥିପାଇଁ ମୁଁ ଘୋଡ଼ା ବା ଡାଣ୍ଡି ରାସ୍ତା ଛାଡ଼ି ପର୍ବତ ଉପରେ ଯାଇଥିବା ଅତି ସଙ୍କୀର୍ଣ୍ଣ ପାଦଚଲା

ରାସ୍ତାରେ ଯିବାକୁ ବସୁଥିଲି । ବଦ୍ରୀନାଥ ଯାତ୍ରା ସମୟରେ ଏ ପ୍ରକାର ରାସ୍ତାରେ ଯିବାର ବିପଦ ମୁଁ ପୂର୍ବରୁ ଉପଲବ୍ଧି କରିଥିଲି, କିନ୍ତୁ ଉପସ୍ଥିତ କ୍ଷେତ୍ରରେ ସାଧାରଣ ରାସ୍ତାରେ ଜନସ୍ରୋତ ମଝିରେ ଯାଉ ଯାଉ ପଡ଼ିଗଲେ ବଡ଼ ବିପଦ; ବିଶେଷତଃ ଜନସ୍ରୋତ ସଙ୍ଗରେ ଘୋଟକସ୍ରୋତ ଓ ଡାଣ୍ଡିସ୍ରୋତ ଲାଗିଥିବାରୁ । ପର୍ବତ ଉପରେ ମଣିଷଚଲା ସଙ୍କୀର୍ଣ୍ଣ ରାସ୍ତାରେ ଗଲେ ଏକେତ ସାଧାରଣ ସମୟରେ କେଉଁଠି ଗୋଡ଼ ଖସିଗଲେ କୋଡ଼ିଏ ତିରିଶ ଫୁଟ୍ ତଳକୁ ଖସି କ୍ଷତ ବିକ୍ଷତ ହେବ ବା ହାଡ଼ଗୋଡ଼ ଭାଙ୍ଗିବାର ସମ୍ଭାବନା, ତହିଁ ଉପରେ ପୁଣି ବର୍ଷା ଯୋଗୁ ଏପରି ରାସ୍ତା ମଧ୍ୟ ପିଚ୍ଛିଳ ହୋଇ ଗୋଡ଼ ଖସିବାର ଅଧିକ ସମ୍ଭାବନା । ଏହି ପରିସ୍ଥିତିରେ ଚତୁଷ୍ପଦ ହୋଇ ଅତି ସାବଧାନତାର ସହିତ ପ୍ରତି ପାଦକ୍ଷେପକୁ ଜଗି ଚାଲିବା ଓ ମିନିଟ୍‌କରେ ସାମାନ୍ୟ କେତେ ଗଜ ବେଗରେ ଯିବା ଛଡ଼ା ଅନ୍ୟ ଉପାୟ ନଥିଲା । ଏ ଦିନ ସୁଦ୍ଧା କାଦୁଅ ଯୋଗୁ ମୁଁ ଚାରଟି ଜୋତାକାଢ଼ି ଚାଲୁଥିଲି । ଏ ଦିନ ମଧ୍ୟରେ ମୁଁ ପାଞ୍ଚ ଛଅ ଥର କଚଡ଼ା ଖାଇବାରୁ ମୋର ଧୋତି, କାମିଜ, କୋଟ ଆଦି କାଦୁଅ ହୋଇଯାଇଥିଲା ଓ ଥରେ ଅତି ଗଡ଼ାଣିଆ ପର୍ବତରୁ ଗଡ଼ିଲା ସମୟରେ ଗୋଟିଏ ଛୋଟ ବୁଦା ଗଛକୁ ଧରି ସମ୍ଭାଳି ନେଇଥିଲି । ବାସ୍ତବିକ ଏହି ଦିନଟା ଥିଲା ମୋ ପକ୍ଷରେ ଏକ ଅଗ୍ନିପରୀକ୍ଷା । ସଂସାରର ଜୀବନ ଯାତ୍ରାରେ କେତେଥର ପଦସ୍ଖଳନ ହୋଇ ତାର କଠୋର ପରିଣତି ମୁଁ ଭୋଗ କରିଛି । ଏ ଦିନର ପିଚ୍ଛିଳ ପଥ ଯେପରି ମାନବିକ ଜୀବନ ପଥର ଏକ ପ୍ରତୀକ ଥିଲା, କିନ୍ତୁ ଏ ଦିଗରେ ମୋର ଦୁର୍ଗତି ଦେଖି ହସିବାର ଲୋକ କେହି ନଥିଲେ ଓ ମୁଁ ପଡ଼ିଗଲେ ସବଳ କରାବଲମ୍ବ ଦେଇ ଉଠାଇଦେବା ପାଇଁ ଏକ ଅଦୃଶ୍ୟ ହାତକୁ ମୁଁ ଖୋଜୁଥିଲି ଓ ପାଉଥିଲି ।

ଏ ଦିନର ପଥ ପୂର୍ବଦିନ ଅପେକ୍ଷା ଆହୁରି ଦୁଃସାଧ୍ୟ ମନେ ହେଲା । ଏ ଦିନ ଅମରନାଥ ଯାତ୍ରାର ସର୍ବୋଚ୍ଚ ପର୍ବତ ମହାଗନ୍ନସ୍ ପାରି ହେବାକୁ ପଡ଼େ । ଗନ୍ନସ୍‌ର ଅର୍ଥ ହେଉଛି ପାସ ଓ ପର୍ବତର ଉଚ୍ଚତା ଚଉଦ ହଜାର ପାଞ୍ଚଶହ ଫୁଟ୍ । ପର୍ବତ ଉପରକୁ ଉଠି ପୁଣି ସଙ୍ଗେ ସଙ୍ଗେ ପ୍ରାୟ ଦୁଇହଜାର ଫୁଟ୍‌ରୁ ଅଧିକ ତଳକୁ ଓହ୍ଲାଇ ଯିବାକୁ ହୁଏ ।

ଉଲ୍ଲେଖ ତଳ ମଧ୍ୟରେ ଆକାଶ ପାତାଳ ପ୍ରଭେଦ । ଏ ଦିନ ପ୍ରାୟ ଅବିରାମ ଭାବରେ ଚାଲି ଆଠମାଇଲ ବାଟ ଯିବାକୁ ମୋତେ ସାଢ଼େ - ଆଠ ଘଣ୍ଟା ସମୟ ଲାଗିଲା । ମୁଁ ପ୍ରାୟ ସନ୍ଧ୍ୟା ସମୟରେ ପଞ୍ଚତରଣୀ ନଦୀ କୂଳରେ ଅବସ୍ଥିତ ଆମର ବିଶ୍ରାମ ସ୍ଥାନରେ ପହଞ୍ଚିଲି । ଏ ଅଞ୍ଚଳ ସନ୍ତସନ୍ତିଆ ଓ କାଦୁଅ ଭରା ।

ସେଦିନ ମୁଁ ସମସ୍ତଙ୍କଠାରୁ ଅଧିକ କ୍ଳାନ୍ତ ହୋଇଥିଲି । ରାତିରେ ପ୍ରବଳ ଶୀତ ଯୋଗୁଁ ନିଦ ହେଲା ନାହିଁ । ଚତୁର୍ଦ୍ଦଶୀର ଚନ୍ଦ୍ର ବାହାରେ ଜ୍ୟୋତ୍ସ୍ନାର ଇନ୍ଦ୍ରଜାଲ ସୃଷ୍ଟି କରୁଥିଲା । ମାତ୍ର ସେତେବେଳେ ଆମର ଆଉ ବିଛଣାରୁ ଉଠିବାର ଶକ୍ତି ନଥିଲା ।

ତହିଁ ଆରଦିନ ଶ୍ରାବଣ ପୂର୍ଣ୍ଣିମା ଛବିଶ ତାରିଖ । ଅମରନାଥ ଗୁମ୍ଫା ଆଉ ଚାରିମାଇଲରୁ କିଛି ଅଧିକ ଥିଲା । ଆମେ ପ୍ରାୟ ସାଢ଼େ ଆଠଟା ବେଳେ ବାହାରିଲୁ ଓ ରାସ୍ତାରେ କାଦୁଅ ଥିବା ଯୋଗୁଁ ମୁଁ ନଗ୍ନପାଦରେ ବାହାରିଲି । ଆମେ ମାଇଲଏ ବାଟ ନ ଯାଉଣୁ ରାସ୍ତା ଉପରେ ବରଫ ପଡ଼ିଲା । ଖାଲି ପାଦରେ ବରଫ ଉପରେ ଚାଲିଲେ frost-bite ହୋଇ ଭୀଷଣ ବିପଦ ହୁଏ ବୋଲି ମୋର ମନରେ ପୂର୍ବରୁ ଆତଙ୍କ ଥିଲା । କିନ୍ତୁ ମୁଁ ପ୍ରାୟ ଧାଇଁ ଧାଇଁ କୋଡ଼ିଏ ଗଜ ବରଫ ରାସ୍ତା ପାର ହେଲି । ରାସ୍ତା ଚାରିମାଇଲ୍‌ରୁ ପ୍ରାୟ ଅଧେ ଚଢ଼ାଣି । ଅମରନାଥ ପାଖରେ ରାସ୍ତାରେ ପୁଣି ଦୁଇ ଜାଗାରେ ପ୍ରାୟ ୪୦।୫୦ ଗଜ ଲେଖାଏଁ ବରଫ ଉପରେ ଚାଲିବାକୁ ପଡ଼େ । ଆମେ ପ୍ରାୟ ଏଗାରଟା ବେଳେ ଅମରନାଥ ଗୁମ୍ଫାର ପାଦ ଦେଶରେ ଅମରାବତୀ ନଦୀ କୂଳରେ ପହଞ୍ଚି କିଛି ସମୟ ବିଶ୍ରାମ ନେଲୁ ଗାଧୋଇବା ପୂର୍ବରୁ ।

ସେତେବେଳେ ଯାତ୍ରୀସ୍ରୋତ ଅବିରାମ ଚାଲିଥାଏ । କୋଟପ୍ୟାଣ୍ଟ ପିନ୍ଧା କେତେଗୁଡ଼ାଏ ବଙ୍ଗାଳୀ ଯୁବକ, ଡାଣ୍ଡିରେ ଅଶୀତିପର କେରଳ ବୃଦ୍ଧ, ଅଶ୍ୱପୃଷ୍ଠରେ ମହାରାଷ୍ଟ୍ର ମହିଳା, କୁଲିର କାନ୍ଧ କଣ୍ଡିରେ ବସି ଦୁଇ ତିନି ବର୍ଷର ଶିଶୁ, କଲୋଚ୍ଛ୍ୱଳ ଅମରାବତୀର ସ୍ରୋତର ସମାନ୍ତରାଳ ପଥରେ ଓ ତହିଁର ବିପରୀତ ଦିଗରେ ଚାଲିଥାନ୍ତି ଏକ ମନରେ ଏକ ଧ୍ୟାନରେ—ଅମରନାଥ ଦର୍ଶନ ପାଇଁ । କେଉଁଠି ପଳିତକେଶା ବୃଦ୍ଧା ତାର ସାହାଯ୍ୟକାରୀ ସୈନିକ ଯୁବକର ସାହାଯ୍ୟ ପାଇଁ କୃତଜ୍ଞତାରେ

ପାଦ ଛୁଇଁଛି, ଆଜ ଯୁବକ ଲଜ୍ଜିତ ହୋଇ ମାତୃସମା ବୃଦ୍ଧାକୁ ବାରଣ କରୁଛି, କେଉଁଠି ନିତାନ୍ତ ପରିଶ୍ରାନ୍ତ କ୍ଷୀଣାଙ୍ଗୀ ତନ୍ୱଙ୍ଗୀକୁ ଡାକ୍ତର ପରୀକ୍ଷା କରି ବ୍ରାଣ୍ଡି ଔଷଧ ଦେଉଛନ୍ତି । କେଉଁଠି ତ୍ରିଶୂଳଧାରୀ କୋପନ ସ୍ୱଭାବ ସନ୍ନ୍ୟାସୀ ଭିକ୍ଷା ପାଇଁ କରପ୍ରସାରିଛନ୍ତି, ଆଜ ସମଗ୍ର ଭାରତର ଏକ ଚଳନ୍ତି ଚିତ୍ର ବିବିଧ ବର୍ଣ୍ଣର ନାନା ବେଶରେ ଭୂଷିତ ହୋଇ ଚାଲିଛି । ଭାରତର ସବୁ ପ୍ରାନ୍ତରୁ ଆବାଲବୃଦ୍ଧବନିତା ଯାତ୍ରୀମାନଙ୍କର ଏକ ଜୀବନ୍ତ ଓ ଚଳନ୍ତ ଚିତ୍ର ମନରେ ଆନନ୍ଦ ଦେଲା । ଆଜଠାରୁ ପ୍ରାୟ ଷାଠିଏ ବର୍ଷ ପୂର୍ବେ ସ୍ୱାମୀ ବିବେକାନନ୍ଦ ଅମରନାଥ ଦର୍ଶନ ପାଇଁ ଆସିଥିଲେ ତାଙ୍କର ଅଭିଜ୍ଞତାକୁ ଅବିସ୍ମରଣୀୟ ଭାଷାରେ ଚିତ୍ରିତ କରି ଯାଇଛନ୍ତି । ସେହି ଚିତ୍ର ସହିତ ମୁଁ ନିଜର ଅଭିଜ୍ଞତାକୁ ତୁଳନା କରୁଥିଲି । ଷାଠିଏ ବର୍ଷ ମଧ୍ୟରେ ଅମରାବତୀର ପ୍ରବାହରେ ବା ତହିଁର ବିପରୀତ ଦିଗରେ ଗତି କରୁଥିବା ଭକ୍ତମାନଙ୍କର ପ୍ରବାହରେ ବୋଧହୁଏ କୌଣସି ପରିବର୍ତ୍ତନ ହୋଇନାହିଁ ।

କିଛିକ୍ଷଣ ବିଶ୍ରାମ ପରେ ବୈରାଗୀ ବାବୁ ଓ ମୁଁ ଅମର ଗଙ୍ଗାରେ ସ୍ନାନ କରିବା ପାଇଁ ଗଲୁ ଓ ସେଠାରୁ ଦେବଦର୍ଶନ ପାଇଁ ଗୁମ୍ଫାକୁ ଗଲୁ । ନଦୀରୁ ଗୁମ୍ଫା ପ୍ରାୟ ଛଅଶହ ଫୁଟ ଉପରେ ।

ଅମରନାଥ ଗୁମ୍ଫାର ଦର୍ଶନୀୟ ହେଉଛନ୍ତି ଶିବଲିଙ୍ଗ । ପ୍ରତିମାସ ଚନ୍ଦ୍ରକଳାର କ୍ଷୟବୃଦ୍ଧି ସଙ୍ଗେ ସଙ୍ଗେ ଶିବଲିଙ୍ଗର ଆକାରରେ କ୍ଷୟବୃଦ୍ଧି ହୁଏ ଓ ଶ୍ରାବଣ ପୂର୍ଣ୍ଣିମୀ ଦିନ ଏହା ଆକାରରେ ସବୁଠାରୁ ବଡ଼ ବୋଲି ଏବଂ ଶ୍ରାବଣ ପୂର୍ଣ୍ଣିମୀ ସମୟରେ ଏଠାକୁ ଆସିବା ସବୁ ସମୟ ଠାରୁ ଅଳ୍ପ କଷ୍ଟ ଜନକ ବୋଲି ଅଧିକାଂଶ ଯାତ୍ରୀ ଏଠାକୁ ଶ୍ରାବଣ ପୂର୍ଣ୍ଣିମା ସମୟରେ ଆସନ୍ତି ।

ଏଠାରେ ଏକ ପାର୍ବତ୍ୟ କପୋତ ଯୁଗଳ ଦେଖାଯାନ୍ତି ବୋଲି ପୂର୍ବରୁ ଶୁଣିଥିଲି । ଗୁମ୍ଫାକୁ ଯିବା ବେଳେ ଆକାଶରେ ଉଡ଼ୁଥିବା ଦୁଇଟି କଳା ପକ୍ଷୀକୁ ଲକ୍ଷ୍ୟ କରି ଯାତ୍ରୀମାନେ କହୁଥିଲେ ଏହି ସେହି କପୋତ ଯୁଗଳ । ଏମାନଙ୍କୁ ଦେଖିଲେ ଅମରନାଥ ଯାତ୍ରା ସଫଳ ହୁଏ ବୋଲି ଲୋକେ କହନ୍ତି । ଦକ୍ଷିଣରେ ପକ୍ଷିତୀର୍ଥ କଥା ସମସ୍ତେ ଶୁଣିଥିବେ । ଆମ ଧର୍ମ ସମ୍ବନ୍ଧରେ ପକ୍ଷିଯୁଗଳର ସମ୍ପର୍କ ବିଶ୍ଳେଷଣ କଲେ

ମନେ ହୁଏ ଆଧ୍ୟାତ୍ମିକତାର ସହିତ ଆଧିଭୌତିକତାର ସମନ୍ୱୟ ବୋଧହୁଏ ଏହିଠାରେ । ଅଥବା ଉପନିଷଦରେ ଯେମିତି ଜୀବାତ୍ମା ଓ ପରମାତ୍ମାଙ୍କୁ ପକ୍ଷିଯୁଗଳ ରୂପେ କଳ୍ପନା କରାଯାଇଛି, ଏହି ପକ୍ଷିଯୁଗଳ ତହିଁର ପ୍ରତୀକ ମାତ୍ର । ମୁଣ୍ଡକ ଉପନିଷଦ୍‌ରେ କୁହାଯାଇଛି:—

"ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟା
ସମାନଂ ବୃକ୍ଷଂ ପରିଷସ୍ୱଜାତେ
ତୟୋରନ୍ୟଃ ପିପ୍ପଳଂ ସ୍ୱାଦ୍ୱତ୍ତି
ଅନ୍ୟୋଽନଶ୍ନନ୍ନଭିଚାକଶୀତି
ସମାନେ ବୃକ୍ଷେ ପୁରୁଷୋ ନିମଗ୍ନୋ
ଽନୀଶୟା ଶୋଚତି ମୁହ୍ୟମାନଃ ।
ଜୁଷ୍ଟଂ ଯଦା ପଶ୍ୟତ୍ୟନ୍ୟମୀଶ
ମସ୍ୟ ମହିମାନମିତି ବୀତଶୋକଃ !

ଅମରନାଥ ପଥରେ ଯେଉଁଠି (ପିସ୍ସୁ ଘାଟିଠାରେ) ଫଳବାନ୍ ବୃକ୍ଷଗଣ ଶେଷ ହୋଇଯାଏ, ସେହିଠାରୁ ଫଳକାମନା ମଧ୍ୟ ଶେଷ ହେବା ଉଚିତ । କିନ୍ତୁ ସଂସାରୀ ମନୁଷ୍ୟ ଏହି ଫଳହୀନ, ତୃଣହୀନ ଅଞ୍ଚଳକୁ ଆସେ ଫଳକାମନା କରି । ବନ୍ଧ୍ୟା ଗୃହେ ପୁତ୍ର, ନବବଧୂ ଗୃହେ ଅଖଣ୍ଡ ସୌଭାଗ୍ୟ, ବ୍ୟବସାୟୀ ଗୃହେ ଲକ୍ଷ୍ମୀଲାଭ, ସହସ୍ର କାମନାର କୁସୁମ ଆଶୁତୋଷଙ୍କୁ ନିବେଦନ କରାଯାଏ ଏହି ଶିବମନ୍ଦିରରେ । କିନ୍ତୁ ଏ ପାଖରେ କୌଣସି ଫଳ ନାହିଁ, ଯାହାକି ଭଗବାନ୍ ଶଙ୍କର ସଂସାରୀର ବାଞ୍ଛା-ପୂରଣ ପାଇଁ ଦେଇ ପାରିବେ । ସେଥିପାଇଁ ବୋଧହୁଏ ଏହି ପକ୍ଷୀ ଦର୍ଶନ ଫଳ । ଯେତେଦିନ ପର୍ଯ୍ୟନ୍ତ ସଂସାରର ସ୍ୱାଦୁଫଳ ଭୋଗୀ ପକ୍ଷୀ ସବୁବେଳେ ସାଂସାରିକ ଆସକ୍ତିରେ ମତ୍ତ ହୋଇ ଫଳରେ ଆସକ୍ତ ରହିବ ସର୍ବସାକ୍ଷୀ ଅନ୍ୟପକ୍ଷୀ ଆଡ଼େ ଚାହିଁ ନାହିଁ, ସେତେଦିନ ପର୍ଯ୍ୟନ୍ତ ତାର ଶୋକ, ମୋହ, ଦୁଃଖ ଲାଗି ରହିଥିବ । ଯେଉଁଦିନ ସେ ଫଳରେ ଅସକ୍ତ ରହିବ ଅନ୍ୟ ପକ୍ଷୀକୁ ନିରେଖି ଦେଖିବ, ସେହିଦିନ ତାର ଶୋକ ହେବ ।

ଦୁରାରୋହ ଆଧ୍ୟାତ୍ମିକତାର ଶିଖରକୁ ଆମେ ଅଗ୍ରସର ହେଉଥିଲୁ ।

ଯେଉଁ ଶ୍ମଶାନରେ ଆଶା ଓ ନୈରାଶ୍ୟର ଚିତା ଏକା ସଙ୍ଗରେ ଜଳେ, ଜୀବନର ସାଫଲ୍ୟ ଓ ବ୍ୟର୍ଥତା ସେହିଁଠି ଏକପରି ଜଣାପଡ଼େ, ଆମେ ସେହି ଚିତା ଉପରୁ ଐଶ୍ୱର୍ଯ୍ୟ ଓ ବିଭୂତି ଆହରଣ କରିବା ପାଇଁ ଯାଉଥିଲୁ ।

ଯାତ୍ରୀମାନଙ୍କର ଭୀଷଣ ଭିଡ଼ ଭେଦ କରି ସଂକୀର୍ଣ୍ଣ ପଥରେ ତୁଷାର ଲିଙ୍ଗ ଅମରନାଥଙ୍କୁ ଦର୍ଶନ କରିବାକୁ ଆମକୁ ବହୁ ଆୟାସ ସ୍ୱୀକାର କରିବାକୁ ହେଲା । ଆମେ ବିଭୂତି ଆହରଣ କରି ଦେବଦର୍ଶନ ଓ ପୂଜା ସାରି ଫେରୁ ଫେରୁ ପ୍ରାୟ ତିନିଟା ସମୟ ହୋଇଗଲା ।

ସେହିଦିନ ସେହି ପ୍ରକାର କଠୋର କାୟିକ ପରୀକ୍ଷାରେ କୌଣସି ମତେ ଉତ୍ତୀର୍ଣ୍ଣ ହୋଇଥିବାରୁ ମନରେ ସେ ଦିନ ଆନନ୍ଦ ଥାଏ । ସେହି ଦିନ ବର୍ଷାର ଚିହ୍ନ ବର୍ଣ୍ଣ ମଧ୍ୟ ପୋଛି ହୋଇ ଆକାଶ ନିର୍ମଳ ହେଲା । ଆମେ ତିନିଟାବେଳେ ଅମରନାଥରୁ ବାହାରି ପାଞ୍ଚଟାବେଳେ ପଞ୍ଚତରଣୀରେ ଉପସ୍ଥିତ ହେଲୁ । ଏ ଦିନ ଅନ୍ୟ ଅନେକ ଯାତ୍ରୀ ଆହୁରି ଦୂରକୁ ଫେରି ଯାଉଥିଲେ ସୁଦ୍ଧା ଆମେ ପଞ୍ଚତରଣୀରେ ବିଶ୍ରାମ କରିବାର ସ୍ଥିର କରିଥିଲୁ । ଏ ଦୁଇ ତିନ ଦିନରେ ଭୀଷଣ ଶୀତ ଯୋଗୁ ଓ ଖାଦ୍ୟାଭାବରୁ ପ୍ରାୟ ତିରିଶ ଗୋଟି ଘୋଡ଼ା ଅଶ୍ୱଶାଳା ସମ୍ବରଣ କରିଥିଲେ । ସେ ଦିନ ଥିଲା ରାକ୍ଷୀ ପୂର୍ଣ୍ଣିମା । କଳାହାଣ୍ଡି ମହାରାଜା ଆମ ସମସ୍ତଙ୍କ ମଣିବନ୍ଧରେ ରାକ୍ଷୀବନ୍ଧନ କରିଥିଲେ । ରାତିରେ ଗଙ୍ଗାଧରଙ୍କ ଜନ୍ମଦିନ ମନେ ପକାଇ ତାଙ୍କର କେତେ କବିତା ଆବୃତ୍ତି ହେଲା । ସେ ଦିନ ମଧ୍ୟ ରାତିରେ ଭୀଷଣ ଶୀତ ବୋଧ ହେଲା ।

ଫେରିବା ସମୟରେ ୧୮ ତାରିଖ ସୁଦ୍ଧା ଆମର ଶ୍ରୀନଗରରେ ପହଞ୍ଚିବାର କଥା ଥିବାରୁ ଘୋଡ଼ାରେ ଫେରିବାର ସ୍ଥିର ହେଲା । ଅମର-ନାଥଙ୍କୁ ଯିବା ସମୟରେ ଆମକୁ ଯେତେ କଷ୍ଟ ସ୍ୱୀକାର କରିବାକୁ ପଡ଼ିଥିଲା, ଫେରିବା ସମୟରେ ପାଗ ଭଲଥିବା ଯୋଗୁ ଓ ଘୋଡ଼ାର ସାହାଯ୍ୟ ଯୋଗୁଁ ଆମକୁ ବିଶେଷ କିଛି କଷ୍ଟ ବୋଧ ହେଲାନାହିଁ । ୧୭ ତାରିଖ ଦିନ ଆମେ ପନ୍ଦର ମାଇଲ ବାଟ ଚନ୍ଦନ ବାଡ଼ିକୁ ଫେରି ପାରିଲୁ । ବାଟରେ ମହାଗନୁଷା ପର୍ବତର ସର୍ବୋଚ୍ଚସ୍ଥାନରେ ଫଟୋ ନିଆଗଲା ଓ ବାବଜାନ୍ ପାଖରେ

ଆମେ ଯେତେବେଳେ ମଧ୍ୟାହ୍ନ ଭୋଜନ କରୁଥିଲୁ, ସେତେବେଳେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ନାମକ ତିନୋଟି ପରସ୍ପର ସମୀପବର୍ତ୍ତୀ ତୁଷାରାବୃତ ପର୍ବତ ଶିଖରର ଅଲୌକିକ ସୌନ୍ଦର୍ଯ୍ୟକୁ ମୁଗ୍ଧ ଦୃଷ୍ଟିରେ ଦେଖୁଥିଲୁ । ତିନୋଟି ଦେବତାଙ୍କ ପାଇଁ ଧଳା ମଖମଲ୍ ଚାଦର ଦିଆ ଯାଇଥିବା ତିନୋଟି ସିଂହାସନ ପରି ତିନୋଟି ଶିଖର ସୂର୍ଯ୍ୟକିରଣ ଶୋଭିତ ତୁଷାରରେ ଉଜ୍ଜଳ ଦିଶୁଥାଏ । ପିସୁଘାଟିକୁ ଆମେ ପ୍ରାୟ ଚାରିଟା ସମୟରେ ପହଞ୍ଚିଲୁ ଓ ଚୃଳକରି ଏ ଜାଗା ଘାଟି ପାରିହେବାକୁ ହେଲା । ଫେରିଲାବେଳେ ଏଠାରେ ଭିଡ଼ ପୂର୍ବପରି ନଥିଲା । ପିସୁଘାଟି ଉଠିଲା ସମୟରେ ଯେପରି କଷ୍ଟ ହୋଇଥିଲା, ଓହ୍ଲାଇଲାବେଳେ ସାଙ୍ଗରେ ଲାଠିଥିବାରୁ ଏତେ କଷ୍ଟ ହେଲାନାହିଁ । ଚନ୍ଦନବାଡ଼ିରେ ପହଞ୍ଚିଲୁ ପ୍ରାୟ ପାଞ୍ଚଟାବେଳେ । ସେଠାରେ ସେ ଦିନ ଗୋଟିଏ ଛୋଟ ବଜାର ଥିଲା ।

ସେ ଦିନ ଚନ୍ଦନବାଡ଼ିରେ ବିଶ୍ରାମ କରି ତହିଁ ଆରଦିନ ପ୍ରାୟ ଦଶଟା ବେଳେ ପହଲଗାଁ ଅଭିମୁଖେ ବାହାରିଲୁ ଓ ପ୍ରାୟ ଗୋଟାଏ ବେଳେ ଆମର ଯାତ୍ରା ଶେଷ ହେଲା ।

ପହଲଗାଁରେ ଖିଆ ପିଆ ସାରି ଭଡ଼ା ନିଆ ଯାଇଥିବା ତମ୍ବୁ, ବର୍ଷାତି କୋଟ ଆଦି ଫେରାଇବାରେ ଓ ଘୋଡ଼ା ଆଦିର ପାଉଣା ନିଷ୍ପତ୍ତି କରିବାରେ ଆମକୁ ପ୍ରାୟ ଚାରିଘଣ୍ଟା ଲାଗିଲା ।

ଆମେ ପ୍ରାୟ ସାଢ଼େ ପାଞ୍ଚଟା ସମୟରେ ପହଲଗାଁ ଶ୍ରୀନଗର ବସ୍ ଧରିଲୁ । ଲୋକ ଭିଡ଼ରେ ଅତି କଷ୍ଟରେ ସ୍ଥାନ ପାଇଲାରୁ ଆଶ୍ୱସ୍ତି ମିଳିଲା ।

ବାଟରେ ଆସିଲାବେଳେ ମାର୍ତ୍ତଣ୍ଡଠାରେ ସୂର୍ଯ୍ୟାସ୍ତ ବଡ଼ ବିଚିତ୍ର ଦେଖାଗଲା । ତୁଷାର ଶୃଙ୍ଗ ଦୂର ପର୍ବତର ସେ ଆଡ଼େ ସୂର୍ଯ୍ୟ ଲୁଚିଗଲା ପରେ ସୂର୍ଯ୍ୟର ସ୍ୱର୍ଣ୍ଣରଶ୍ମି ତୁଷାରରେ ପ୍ରତିଫଳିତ ହୋଇ ଅତି ଉଜ୍ଜ୍ୱଳ ତପ୍ତ କାଞ୍ଚନ ପରି ଜ୍ୱଳନ୍ତ ଅଗ୍ନିଶିଖାଠାରୁ ମଧ୍ୟ ଅଧିକ ଉଜ୍ଜ୍ୱଳ ଦେଖା ଯାଉଥାଏ । ପର୍ବତ ଓ ଆକାଶର ସୀମାନ୍ତ ଚକ୍ରବାଳ ବହୁଦୂର ପର୍ଯ୍ୟନ୍ତ ଉଜ୍ଜ୍ୱଳ ସୁନାର ଜରିରେ ମଣ୍ଡିତ ହେଲା ପରି ଦେଖାଯାଉଥାଏ । ଅଥବା ପୃଥିବୀର ସର୍ବୋଚ୍ଚପର୍ବତକୁ ପ୍ରକୃତି ସ୍ୱର୍ଣ୍ଣ-ରାଜ ମୁକୁଟରେ ମଣ୍ଡିତ କରିଥାଏ ।


Digitized by srujanika@gmail.com

ଆମେ ସମସ୍ତେ ମୁଗ୍ଧ ହୋଇ ଦେଖୁଥାଉ । ଏତେ ଉଚ୍ଚ ସ୍ଥାନରେ ସାଧାରଣତଃ ନୀଳ ଆକାଶର ଗାଢ଼ତା ପ୍ରୀତିପ୍ରଦ ହୁଏ କିନ୍ତୁ ଏ ଦିନର ସୂର୍ଯ୍ୟାସ୍ତରେ ଆମେ ଯେଉଁ ଅନିର୍ବଚନୀୟ ଆନନ୍ଦ ଲାଭ କଲୁ ତାହା କୌଣସି କବି ବା ଲେଖକ ବର୍ଣ୍ଣନା କରି ପାରିବେ ନାହିଁ; କୌଣସି ଚିତ୍ରକର ଏତେ ଉଜ୍ଜ୍ୱଳ ସୂର୍ଯ୍ୟାସ୍ତକୁ ଚିତ୍ର କରି ପାରିବେ ନାହିଁ ।

ଆମେ ସନ୍ଧ୍ୟା ଆଠଟାରେ ଶ୍ରୀନଗରରେ ପହଞ୍ଚି ସେ ରାତି ଓ ତହିଁ ଆରଦିନ ଅତି ଅଳସ ଭାବରେ ଯାପନ କରିଥିଲୁ । ଦେହର କ୍ଲାନ୍ତି ଆମକୁ ଅବସନ୍ନ କରିଥାଏ । ଆମେ କୁମ୍ଭକର୍ଣ୍ଣ ହେବାକୁ ବସିଥିଲୁ ।

ତିରିଶ ତାରିଖ ସକାଳେ ବ୍ୟୋମଯାନରେ ଶ୍ରୀନଗରରୁ ପଠାନକୋଟ ଆସିବାର ବ୍ୟବସ୍ଥା ପୂର୍ବରୁ କରି ଯାଇଥିଲା । ତେଣୁ ଏ ଦିନ ସକାଳୁ ବ୍ୟୋମଯାନ ଅଫିସରେ ଉପସ୍ଥିତ ହେଲୁ ଓ ପ୍ରାୟ ସାଢ଼େ ଆଠଟାରେ ଶ୍ରୀନଗର ବିମାନଘାଟି ଛାଡ଼ିଲୁ । ଏ ଦିନ ମଧ୍ୟ ପାଗ ଖୁବ୍ ଭଲଥିଲା । ଶ୍ରୀନଗରରୁ ପଠାନକୋଟକୁ ବ୍ୟୋମଯାନରେ ପ୍ରାୟ ଏକ ଘଣ୍ଟା ଲାଗେ । ଆମେ ଆକାଶରେ ଗତି କଲା ସମୟରେ ପ୍ରାକୃତିକ ଦୃଶ୍ୟ ଉପଭୋଗ୍ୟ ହୋଇଥିଲା । ପ୍ରଥମରେ ଶ୍ରୀନଗର ଉପକଣ୍ଠବର୍ତ୍ତୀ ଶାଳି-କ୍ଷେତ୍ରମାନ ଶ୍ୟାମଳତାର ବିଭିନ୍ନ ଗାଢ଼ତାରେ ଏକ ସୁନ୍ଦର ଗାଲିଚାପରି ଦେଖା ଯାଉଥାଏ । ପରେ କେଉଁଠି ଉଚ୍ଚ ପର୍ବତମାଳା ମଧ୍ୟରେ ବହି ଯାଉଥିବା ଖରସ୍ରୋତା, କୁଟିଳଗତି ନିର୍ଝରଣୀ, କେଉଁଠି ପାଇନ ବୃକ୍ଷର ସୁସଂଯତ ଅରଣ୍ୟ, କେଉଁଠି ମେଘମାଳାରେ ଅର୍ଦ୍ଧ-ଆବୃତ ଧରଣୀର ଶୋଭା ଆମକୁ କାଶ୍ମୀରର ପ୍ରକୃତିର ବିଦାୟ ଅର୍ଘ୍ୟ ପରି ମନେ ହେଲା । ବ୍ୟୋମଯାନ ତଳେ ଧବଳ ମେଘସ୍ତୂପ ଦେଖି ମନେ ହେଲା ମତେ କି ଧୁଣା ହୋଇଥିବା ହଜାର ହଜାର ମହଣ ତୁଳା ଉଡୁଛି । ବାମ ଦିଗରେ ମେଘସ୍ତରରୁ ଉପରେ ଅତି ଦୂରରୁ ତୁଷାରାବୃତ ଉତ୍ତୁଙ୍ଗ ପର୍ବତ ଶିଖର ନଙ୍ଗା ପର୍ବତ ବା ହରମୁଖ ହୋଇଥିବ ବୋଲି ଅନୁମାନ କଲୁ । କାଶ୍ମୀର ରାଜ୍ୟରୁ ବିଦାୟନେଲା ସମୟରେ କଳାହ୍ନମଧ୍ୟ ଭିତରେ ଆମର ବିମାନ ପଶିଗଲା ଓ ଅନ୍ତିମ ପଠାନକୋଟ ପାଖକୁ ଆସିଲାବେଳେ ଗୈରିକବସନା ବନ୍ୟାପ୍ଲାବିତା

ଗିରିନଦୀ ମେଘାଚ୍ଛନ୍ନକାର ପଠାନକୋଟ୍ ସହର ପାଖରେ ବହିଯାଉଥିବାର ଦେଖିଲୁ ।

ସେ ଦିନଟା ପଠାନକୋଟ୍‌ରେ ବିଶ୍ରାମ ନେଇ ରାତିରେ ଶ୍ରୀନଗର ଏକ୍ସପ୍ରେସ୍ ଯୋଗେ ଦିଲ୍ଲୀ ଫେରିଲୁ । ପନ୍ଦରଦିନ ଭୂସ୍ୱର୍ଗରେ ଭ୍ରମଣ ପରେ ଦିଲ୍ଲୀକୁ ଫେରି ସ୍ୱର୍ଗ ଲୋକରୁ ବିତାଡ଼ିତ ମାନବ ପରି ବୋଧ କଲୁ ।

---

# କୁମ୍ଭମେଳା

କୁମ୍ଭମେଳା; । ଯେଉଁଠି ପ୍ରାୟ ଚାଳିଶରୁ ଷାଠିଏ ଲକ୍ଷ ଲୋକ ମହାପୁଣ୍ୟ ଓ ମୁକ୍ତି ଲାଭ କରିବା ଆଶାରେ ତ୍ରିବେଣୀ ତୀର୍ଥରେ ବୁଡ଼ ପକାଇଥିଲେ । ଯେଉଁଠି ହଜାରେ ଲୋକ ଜନଗହଳରେ ଚାପି ହୋଇ ଗଙ୍ଗାଲାଭ କରିଥିଲେ । ଯେଉଁଠି ହିମାଳୟରୁ କୁମାରିକା ଓ ଆସାମରୁ ପଞ୍ଜାବ ପର୍ଯ୍ୟନ୍ତ ମହାଭାରତର ସମସ୍ତ ଅଞ୍ଚଳରୁ ଲୋକ ସମାଗମ ହୋଇ ଏ ଉପମହାଦେଶର ଏକତାର ପ୍ରତ୍ୟକ୍ଷ ପ୍ରମାଣ ଦେଇଥିଲା । ଯେଉଁଠି ନିରନ୍ନ ଭିକ୍ଷୁକ ସଙ୍ଗେ ଧନୀ, ମାନୀ, ରାଜା, ମହାରାଜା ଓ କୁମ୍ଭମେଳାର ନବତମ ଆବିଷ୍କୃତ ଜାତି ଭି. ଆଇ. ପି. (V.I.P.) ଅର୍ଥାତ୍ ଅତି ପ୍ରଧାନ ଲୋକ କାନ୍ଧକୁ କାନ୍ଧ ମିଳାଇ ଯିବା ଆସିବା କରିଥିଲେ । ଯେଉଁଠି ବହୁ ଲକ୍ଷ ଧର୍ମପରାୟଣ ଲୋକଙ୍କର ପ୍ରଶଂସାମାନ ଓ ଅବିଶ୍ୱାସୀର କୁଞ୍ଚିତ-ନାସିକା ଦୃଷ୍ଟି ହଜାର ହଜାର ଉଲଗ୍ନସନ୍ୟାସୀ ଓ ଭଣ୍ଡତପସ୍ୱୀଙ୍କର ଅଭିନବ ଶୋଭାଯାତ୍ରାରେ ନିବଦ୍ଧ ହୋଇଥିଲା । ଯେଉଁଠି ସର୍ବସ୍ୱ; ଏପରିକି ନିଜର ବସ୍ତ୍ରକୁ ସୁଦ୍ଧା ପରିତ୍ୟାଗ କରିଥିବା ସନ୍ୟାସୀମାନଙ୍କର ମଧ୍ୟ ଅହମିକା ଓ ଅସୂୟା ପ୍ରତ୍ୟକ୍ଷ ଦେଖା ଯାଉଥିଲା । ଯେଉଁଠି ସହସ୍ର ସହସ୍ର ବର୍ଷରୁ ଚାଲି ଆସୁଥିବା ହିନ୍ଦୁ ସଂସ୍କୃତିର ପରମ୍ପରା, କଳ୍ପବାସ; ଧର୍ମୋପଦେଶ ଓ ପ୍ରଚାର ରୂପେ ଅଭିବ୍ୟକ୍ତି ଲାଭ କରିଥିଲା, ଯେଉଁଠି ସବୁ ପ୍ରକାର ବ୍ୟବସାୟୀମାନଙ୍କ ପକ୍ଷରେ ଅର୍ଥ ଓ ଧର୍ମ ଏକ ସଙ୍ଗରେ ଅର୍ଜନ କରିବାର ସୁବିଧାଥିଲା । ସେହି କୁମ୍ଭମେଳା ଏ ବର୍ଷ (୧୯୫୪ ସାଲ) ଯେପରି ଆଡ଼ମ୍ବର ପୂର୍ଣ୍ଣ ଓ ଲୋକ ବହୁଳ ହୋଇଥିଲା, ପୂର୍ବରୁ ଏ ପ୍ରକାର କେବେ ହୋଇ ନଥିଲା ବୋଲି ଶୁଣାଯାଏ ।

ଆଧୁନିକ ସଭ୍ୟତାର ଆଲୋକରେ ଆଲୋକିତ ଲୋକେ, ଏତେ ଲୋକ ଏକତ୍ର ହୋଇ ସହଜ ଉପାୟରେ ପୁଣ୍ୟ ଅର୍ଜନ କରିବାକୁ ଏକ

କୁମ୍ଭସ୍ନାନ ବୋଲି ମନେ କରି ପାରନ୍ତି । କିନ୍ତୁ ଏ ପ୍ରକାର ଭାବଧାରାରେ କୌଣସି ମୌଳିକତା ନାହିଁ । କବିବର ଶ୍ରୀହର୍ଷ ତାଙ୍କର 'ନୈଷଧୀୟ ଚରିତମ୍' ମହାକାବ୍ୟରେ ଚାର୍ବାକଙ୍କ ମୁଖରେ ଗଙ୍ଗାସ୍ନାନରୁ ପୁଣ୍ୟ ଲାଭସୁ ଲୋକଙ୍କୁ ଥଟ୍ଟା କରି କୁହାଇଛନ୍ତି:—

ବନ୍ଧୁଜ୍ଞ ପରାୟଣାସୁ
ଜନା ଜନାତମଙ୍ଗଳନାଃ
ବଗ୍ରହାସ୍ଥା ଗ୍ରତଃ ପଶ୍ଚାଦ୍
ଗଚ୍ଛନ୍ତେରନ୍ତ୍ର ବନ୍ଧୁମନ୍

ଅର୍ଥାତ୍ ମେଣ୍ଢା ଯେପରି ଯୁଦ୍ଧ କଲାବେଳେ ଆଗକୁ ନ ଯାଇ ପଛଘୁଞ୍ଚା ଦେଇ ଯୁଦ୍ଧ କରେ, ସେହିପରି ଉପରେ ଥିବା ସ୍ୱର୍ଗକୁ ଯିବାକୁ ଇଚ୍ଛା କରୁଥିବା ଲୋକେ ପାଣିରେ ତଳକୁ ବୁଡ଼ିବା ବୋକାମି ମାତ୍ର ଭକ୍ତମୟୀ ମୀରାବାଇ ମଧ୍ୟ କହିଥିଲେ "ତୀର୍ଥ ଜଳରେ ସ୍ନାନ କଲେ ଯଦି ମୁକ୍ତିମିଳୁଥାନ୍ତା, ତେବେ ଜଳଜନ୍ତୁମାନେ ପ୍ରଥମରୁ ମୁକ୍ତି ପାଆନ୍ତେ । ଏ କଥା ଅବଶ୍ୟ ସତ ଯେ କୁମ୍ଭମେଳାକୁ ଯେଉଁ ପକେଟ୍‌ମାରୁମାନେ ଚୋରି ଦ୍ୱାରା ଧନ ଅର୍ଜନ କରିବାକୁ ଯାଇଥିଲେ, ସେମାନେ ମଧ୍ୟ ବିଶ୍ୱାସ କରୁଥିଲେ ଯେ କୁମ୍ଭସ୍ନାନରେ ପକେଟ୍ କଟା ପାପ କଟିଯାଇ ଅର୍ଜିତ ଧନ ବ୍ୟାଙ୍କ୍ ବେଲେନ୍‌ସ ହିସାବରେ ରହିଲା ।

ପରୀକ୍ଷା ପାସ୍ କରିବାପାଇଁ ଚଟି ବହିରେ କେତେ ଲୋକ ଜ୍ଞାନପିପାସା ତୃପ୍ତ କରିଥାନ୍ତି, କେତେ ଲୋକ ସରସ୍ୱତୀ ପୂଜା ବା କବଚ ଧାରଣରେ ପରୀକ୍ଷାରେ କୃତକାର୍ଯ୍ୟ ହେବାକୁ ଆଶା କରନ୍ତି, କେତେ ଲୋକ ପରୀକ୍ଷାରେ ସିଦ୍ଧି ହେଉ ବା ନ ହେଉ, ପ୍ରକୃତ ଜ୍ଞାନ ଅର୍ଜନ ଉଦ୍ଦେଶ୍ୟରେ ସାଧନା ପାଇଁ ଅଧ୍ୟୟନ କରିଥାନ୍ତି । ଯେତେବେଳେ ମୁଁ କୁମ୍ଭମେଳାକୁ ଯିବାକୁ ବାହାରିଲି, ସେତେବେଳେ ମୁଁ କେଉଁ ଶ୍ରେଣୀର ପୁଣ୍ୟ ସଞ୍ଚୟଙ୍କ ଆକାଂକ୍ଷା କରି ନାହିଁ । ୧୯୫୪ ସାଲ ଫେବ୍ରୁଆରି ମାସ ୩ ତାରିଖରେ ଯେଉଁ ଯୋଗ ପଡ଼ିବ, ସେହି ସୁଯୋଗ ଶହେ ବର୍ଷରେ ଥରେ ଆସିବ ବୋଲି ମୁଁ ଶୁଣିଥିଲି । ଧର୍ମ, ଅର୍ଥ, କାମ ମୋକ୍ଷରୁ ଅର୍ଥ ଓ କାମର ସେବାରେ ଦୀର୍ଘ ୩୮ ବର୍ଷ ଅତିବାହିତ କରି ଗୋଟିଏ ମୁହୂର୍ତ୍ତରେ ଏକା ବୁଡ଼ରେ ଅସାମାନ୍ୟ ଧର୍ମ ଓ ଈପ୍ସିତ ମୋକ୍ଷ ଲାଭ କରିବାର ପ୍ରଲୋଭନ

ସାମାନ୍ୟ ନୁହଁ, କିନ୍ତୁ ମୋର କୁମ୍ଭମେଳା ଯିବାରେ ସେ ପ୍ରଲୋଭନ ପ୍ରଲୋଭିତ କରିନାହିଁ । ମହାତ୍ମାମାନଙ୍କ ମିଳନ କ୍ଷେତ୍ର; ଯେଉଁଠାରେ ନିଯୁତ ନିଯୁତ ଲୋକ ଏକତ୍ର ହୋଇଛନ୍ତି, ସେଠାରେ ଅନ୍ୟ ଯାହା କିଛି ପୁଣ୍ୟ ଥାଉ ବା ନ ଥାଉ ଭାରତମାତାଙ୍କର ପ୍ରକୃତ ଚିତ୍ର ଦେଖି ଏକ ଅଭିନବ ଅଭିଜ୍ଞତା ଅର୍ଜନ କରିବା ଆଶାରେ ମୁଁ କୁମ୍ଭମେଳାକୁ ବାହାରିଲି ।

ଲକ୍ଷ ଲକ୍ଷ ଯାତ୍ରୀଙ୍କର ଭିଡ ଭେଦି କୁମ୍ଭମେଳାରେ ପହଞ୍ଚିବା ଗୋଟିଏ ସାଧନା; ଗୋଟିଏ ତପସ୍ୟା । ଏକଥା ବହୁଯାତ୍ରୀଙ୍କ ପକ୍ଷରେ ସତ୍ୟ । ଧନୀ ଲୋକେ ଏ ସତ୍ୟର ବ୍ୟତିକ୍ରମ ହୋଇ ପାରନ୍ତି । ଟ୍ରେନରେ ଅତି ବିପଜ୍ଜନକ ଅବସ୍ଥାରେ ସ୍ୱାସ୍ଥ୍ୟ ଓ ନିରାପତ୍ତାର ନିୟମମାନ ବେଖାତିର କରି ଲୋକଙ୍କୁ କୁମ୍ଭମେଳାକୁ ଯାଉଥିବାର ମୁଁ ଦେଖିଛି । ଟ୍ରେନ୍‌ର ଛାତ ଉପରେ ହଜାର ହଜାର ଲୋକେ ପରସ୍ପରକୁ ଧରା ଧରି ହୋଇ ବସିବା; ଭେକୁଅମ୍ ପାଇପ୍ ଓ ଦୁଇଟି ରେଲଡବା ଯୋଡା ହୋଇଥିବା ସ୍ଥାନରେ ବସିବାର ଦୃଶ୍ୟ ମୁଁ ବନାରସରୁ ଏଲାହାବାଦ ଯାଉଥିବା ରେଲଗାଡ଼ିରେ ଫେବ୍ରୁଆରି ଦୁଇ ତାରିଖ ଦିନ ଦେଖିଥିଲି । ଭିତରେ କେତେ ଲୋକ ଥିବେ କେତେ ଜନସମ୍ମର୍ଦ୍ଦ ଥିବ ଏଥିରୁ କଳ୍ପନା କରି ଯାଇପାରେ । ଏ ସମସ୍ତ ଦୁଃଖ କଷ୍ଟକୁ ପୁଣ୍ୟ ସଞ୍ଚୟର ଏକ ଅଂଶ ମନେ କରି ଲକ୍ଷ ଲକ୍ଷ ଯାତ୍ରୀ ଯାଇଛନ୍ତି ।

ମୋର କୁମ୍ଭମେଳା ଯାତ୍ରା ପ୍ରକୃତରେ ଆରମ୍ଭ ହେଲା—ଫେବ୍ରୁଆରି ଏକ ତାରିଖ ସନ୍ଧ୍ୟାରେ—ଗୟା ଷ୍ଟେସନ୍‌ରୁ । ମୁଁ ଏହା ପୂର୍ବରୁ ସମ୍ବଲପୁରରୁ ରାଞ୍ଚିବାଟେ ଗୟା ଷ୍ଟେସନକୁ ପହଞ୍ଚିବାରେ ବିଶେଷ କିଛି ଉଲ୍ଲେଖଯୋଗ୍ୟ ନ ଥିଲା । ଗୟାରୁ ସେ ସମୟରେ ଅନେକ ସ୍ପେଶିଆଲ୍ ରେଲଗାଡି ଛାଡୁଥିବାରୁ ମୁଁ ଭାବୁଥିଲି; ଗୟାରୁ ଗାଡି ଧରିଲେ କିଛି ସୁବିଧା ହୋଇପାରେ । କିନ୍ତୁ ଜାନୁଆରି ଏକତିରିଶ ତାରିଖ ସନ୍ଧ୍ୟାରେ ମୁଁ ଯେତେବେଳେ ବସରେ ରାଞ୍ଚିରୁ ଗୟା ପହଞ୍ଚିଲି ମୁଁ ଶୁଣିଲି ତା ପୂର୍ବଦିନ ସ୍ୱତନ୍ତ୍ର (Special) ରେଲଗାଡ଼ିରେ ଏତେ ଭିଡ ହୋଇଥିଲା ଯେ ପ୍ରାୟ କୋଡ଼ିଏ ହଜାର ଯାତ୍ରୀ ଟ୍ରେନ୍‌ରେ ସ୍ଥାନ ନ ପାଇ ପାରି ଷ୍ଟେସନରେ ପଡ଼ିଛନ୍ତି ଓ ଗାଡ଼ି ଚଢ଼ିବା ସମୟରେ ଅନେକ ଦୁର୍ଘଟଣା ଘଟିଛି ।

ତହିଁ ଆରଦିନ ସନ୍ଧ୍ୟାରେ ସ୍ପେଶିଆଲ ଟ୍ରେନ୍—ମାତ୍ର ଗୋଟିଏ। ମାତ୍ର ଲୋକ ଅଛନ୍ତି ପ୍ରାୟ କୋଡ଼ିଏଟା ସ୍ପେଶିଆଲ୍ ଟ୍ରେନର। ଅନେକ ଦୁର୍ଘଟନାର ଗପ ମଧ୍ୟ ଶୁଣିଲି। ମନରେ ନାନା ରକମର ଆଶଙ୍କା ହେଉଥାଏ। ଏପରି ପରିସ୍ଥିତିରେ ବୀରଭୂମି ପଛଦୁଆ ଦେଇ ସମ୍ବଲପୁର ଫେରିଯିବା ଶ୍ରେୟସ୍କର ବୋଲି ଥରେ ଥରେ ମନେ ହେଉଥାଏ। କିନ୍ତୁ ଏତେଦୂର ଆସି ଫେରିଯିବା ଆପଣାର ଅପାରଗତାର ଏକ ନିଦର୍ଶନ ହେବ ବୋଲି ଦ୍ୱିଧା ଥାଏ—ବିଶେଷତଃ ଯେତେବେଳେ ଯାତ୍ରୀ ହେଉଛି ମୁଁ ଏକା ଏବଂ ପାଖରେ ଜିନିଷପତ୍ର ଅତି ସାମାନ୍ୟ। ଏକ ତାରିଖ ଅପରାହ୍ଣରେ ଯାତ୍ରୀ ସଂଖ୍ୟା ଏତେ ବଢ଼ି ଗଲା ଯେ ଭାରତର ଜନବାହୁଲ୍ୟ ସମସ୍ୟାର ପ୍ରକୃତ ତାତ୍ପର୍ଯ୍ୟ ମୁଁ ବୁଝି ପାରିଲି। ମୋ ଭଳିଆ ଶିରପାପୀର ଏ ପ୍ରକାର ପୁଣ୍ୟ ସଞ୍ଚୟ ଭାଗ୍ୟର ଅଭିପ୍ରେତ ନୁହେଁ ବୋଲି ଭାବୁଥାଏ। ଜନତା ସମୁଦ୍ର ମଧ୍ୟରେ କୁଲିମାନଙ୍କର ସଂଖ୍ୟା ସାମାନ୍ୟ କେତେ ବୁଦ୍‌ବୁଦ୍ ପରି। ମୋର ଅତି କମ୍ ଜିନିଷପତ୍ର ଦେଖି କୁଲିମାନେ ଅବଜ୍ଞାରେ ଦରଦାମ୍ କରିବାକୁ ସୁଦ୍ଧା ଅସ୍ୱୀକାର କଲେ। ତେଣୁ ଜିନିଷପତ୍ର ହାତରେ ଧରି ସେ ଜନତା ସମୁଦ୍ରରେ ମୁଁ ଯେଉଁ ବେଗରେ ଅଗ୍ରସର ହେଉଥିଲି, ତାହା କବି କାଳିଦାସଙ୍କ ଭାଷାରେ "ତିତୀର୍ଷୁର୍ଦୁସ୍ତରଂ ମୋହାଦୁଡୁପେନାସ୍ମି ସାଗରମ୍।" ଅର୍ଥାତ୍ ଭେଲାରେ ସମୁଦ୍ର ପାର ହେବାକୁ ଚେଷ୍ଟା କଲା ଭଳି। ସ୍ପେଶିଏଲ ଟ୍ରେନ୍ ପ୍ଲାଟ୍‌ଫର୍ମକୁ ଆସି ଦଶମିନିଟ ଛଡ଼ା ହୋଇ ସାରିଲାଣି। ଲୋକେ ଭର୍ତ୍ତି ହୋଇ ଗଲେଣି। ତଥାପି ମୁଁ ଟ୍ରେନ୍‌ରୁ ବହୁ ଦୂରରେ। ଶେଷକ୍ଷଣରେ ମୋର ପୂର୍ବ ଜନ୍ମର ସଞ୍ଚିତ କିଛି ପୁଣ୍ୟ କୁଲି ରୂପରେ ମୋର ସମ୍ମୁଖରେ ଉପସ୍ଥିତ ହୋଇ ପ୍ରସ୍ତାବ କଲା, "ଆପଣ ଟଙ୍କାଏ ବକ୍‌ସିସ୍ ଦେଲେ ଆପଣଙ୍କୁ କୌଣସି ମତେ ଗାଡ଼ିରେ ଚଢ଼ାଇ ଦେବି।" ଏ ଶସ୍ତା ପ୍ରସ୍ତାବରେ ମୁଁ ସମ୍ମତ ହେଲି। ରେଲଡବାମାନଙ୍କର ଦରଜା ଝରକା ସବୁ ଭିତରୁ ବନ୍ଦ କରାଯାଇଥାଏ। ମୋର କୁଲି କଷ୍ଟରେ ଗୋଟିଏ ଝରକା ଖୋଲି ମୋତେ ବସ୍ତା ପରି ଉଠାଇ ଡବା ଭିତରକୁ ଠେଲି ଦେଲା। ମୁଣ୍ଡ ତଳେ ଓ ଗୋଡ଼ ଝରକା ବାହାରକୁ ଥାଇ ମୁଁ ଜଣେ ବୁଢ଼ା ଲୋକଙ୍କ ଦେହ ଉପରେ ପଡ଼ିଲି। ଅତି ବିନୟ ସହକାରେ ତାଙ୍କଠାରେ କ୍ଷମା ପ୍ରାର୍ଥନା କଲି ଏବଂ ଜିନିଷ ପତ୍ର ଭିତରକୁ ଆଣି

ଗୋଟିଏ କୋଣରେ ଗୁଞ୍ଜିଲି । ପ୍ରାୟ ତିରିଶ ଜଣ ବସି ପାରିବା ଭଳି ଗୋଟିଏ ଡବାରେ ଆମେ ଥାଉଁ ପ୍ରାୟ ଦେଢ଼ ଶହରୁ ଅଧିକ ସ୍ତ୍ରୀ ପୁରୁଷ ବାଳୁଆ ଭଳିଆ, ସବୁ ପ୍ରକାର ଅପ୍ରାକୃତିକ ଅବସ୍ଥାରେ ବସି ଓ ଛିଡ଼ାହୋଇ । ମୁଁ ଏ ଡବାର ଶେଷ ଆଗନ୍ତୁକ ବୋଲି ଭାବ ଥିଲି, କିନ୍ତୁ ମୁଁ ପଶି ସାରିଲା ପରେ ମଧ୍ୟ ବାହାରୁ ଆସୁଥିବା ଓ ଭିତରେ ଥିବା ଲୋକଙ୍କ ମଧ୍ୟରେ ଝଗଡ଼ା, ଧକ୍କା ଏପରି ଚାଲିଥାଏ ଯେ ମନେ ହେବ କୌଣସି ଅବରୁଦ୍ଧ ଦୁର୍ଗକୁ ଶତ୍ରୁମାନେ ଆକ୍ରମଣ କରୁଛନ୍ତି । ଦୁଇଘଣ୍ଟା ପର୍ଯ୍ୟନ୍ତ ଏପରି ଲୋକ ଆସୁଥାନ୍ତି । ଶେଷରେ ଲୋକ ସଂଖ୍ୟା ଦୁଇଶହକୁ ମଧ୍ୟ ଟପିଲା । ଫେବୃଆରି ଏକ ତାରିଖ ଗୟାର ଭୀଷଣ ଶୀତରେ ମଧ୍ୟ ଆମେ ମଇ ମାସର ଗରମ ଉପଭୋଗ (?) କରୁଥିଲୁ । କୁମ୍ଭମେଳାରୁ ଯଦି ମୁଁ କିଛି ପୁଣ୍ୟ ସଞ୍ଚୟ କରିଥାଏ, ତେବେ ସେ ପୁଣ୍ୟର ଅନ୍ତତଃ ଅର୍ଦ୍ଧେକ ପାଇବ ଗୟା ଷ୍ଟେଶନର ଜଣେ କୁଲି; କାରଣ ତାର ସାହାଯ୍ୟ ମିଳି ନ ଥିଲେ ମୋର କୁମ୍ଭସ୍ନାନ ସମ୍ଭବ ହୋଇ ନ ଥାନ୍ତା ।

ସ୍ୱର୍ଗପ୍ରାପ୍ତି ପାଇଁ କେତେ ଋଷି କେତେ ତପସ୍ୟା କରୁଥିଲେ । ମୁଁ ମଧ୍ୟ ସେ ରାତିରେ ତପସ୍ୟା କରୁଥିଲି । ବାର ଘଣ୍ଟାରୁ ଅଧିକ ସମୟ ପ୍ରାୟ ଗୋଟିଏ ଗୋଡ଼ରେ ଅଷ୍ଟାବକ୍ର ଭାବରେ ଠିଆ ହୋଇ ରହିବାକୁ ପଡ଼ିଥିଲା; କାରଣ ମୋର ଦେହର ପ୍ରତ୍ୟେକ ଅଙ୍ଗର ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ ପ୍ରତ୍ୟେକ ଦିଗରେ କାହାର ନା କାହାର କନିଷ୍ଠ ପଦ, ହାତ, ଗୋଡ଼, ବା କହୁଣି ଥାଏ । ସେ ରାତିର କଷ୍ଟ ଓ ତପସ୍ୟା ବାହାରେ, ଆହୁରି ଦୁଃଖ ଯେ ଆମ ଟ୍ରେନ୍‌ଟି ପ୍ରତି ଷ୍ଟେସନରେ ଅଧଘଣ୍ଟାରୁ ଘଣ୍ଟାଏ ପର୍ଯ୍ୟନ୍ତ ଅଟକି ରହୁଥାଏ । ଅନ୍ୟାନ୍ୟ ବହୁ ସଂଖ୍ୟକ ମେଲ୍, ପାସେଞ୍ଜର ଓ ମାଲଗାଡ଼ି ଆମର ସ୍ପେଶିଆଲ ଟ୍ରେନକୁ ପାର ହୋଇ ଯାଉଥାନ୍ତି—ଆମର ଈର୍ଷ୍ୟା ଓ ଅଭିମାନ ଘେନି । ଆମେ ପଡ଼ି ଥାଉଁ କାଳି କାଳି । କାହାର ଗୋଡ଼ ଝିମ ଝିମେଇ ଯିବାରୁ ପଡ଼ୋଶୀ ସଙ୍ଗେ ଝଗଡ଼ା କରେ । ପ୍ରତ୍ୟେକ ଲୋକ ପାଇଁ ହୁଏତ ଅଧାବର୍ଗ ଫୁଟ୍ ସ୍ଥାନ, କିନ୍ତୁ ସେତିକି ସ୍ଥାନ ପାଇଁ ଯେତେ ଝଗଡ଼ା, ତାହା ସାମ୍ରାଜ୍ୟବାଦୀଙ୍କ ଝଗଡ଼ାରୁ କୌଣସି ଅଂଶରେ ଊଣା ନୁହେଁ । ଗୟାରୁ ମୋଗଲ ସରାଇ ଷ୍ଟେସନ ପର୍ଯ୍ୟନ୍ତ ପ୍ରାୟ ଶହେ ଦଶମାଇଲ ରାସ୍ତା ଯିବାକୁ ଆମକୁ ଲାଗିଲା ପ୍ରାୟ ବାର ଘଣ୍ଟାରୁ କିଛି

ଅଧିକ । ସେତେବେଳେ ମୋର ଶରୀର ଅବସାଦରେ ଓ ମନ ନାସ୍ତିକତାର ଚରମ ସୀମାରେ ପହଞ୍ଚି ସାରିଥିଲା । ମୋଗଲ ସରାଇରୁ ଧୈର୍ଯ୍ୟଚ୍ୟୁତ ଘଟିବାରୁ ଗାଡ଼ିରୁ ଓହ୍ଲାଇ ଗଲି । ସେଠାରୁ ସମ୍ବଲପୁରକୁ ଫେରିବାର ଉଦ୍ଦେଶ୍ୟରେ ମୋର ଏକ ପ୍ରକାର ନିଶ୍ଚୟ ଶୁଣି ମୋର ସହଯାତ୍ରୀମାନେ ଯଥେଷ୍ଟ ସହାନୁଭୂତି ଦେଖାଇଥିଲେ ।

ମୋପରି ଦୁର୍ବଳ ମନୁଷ୍ୟର ମନ ପରିବର୍ତ୍ତନ କରିବାରେ ମୋଗଲ ସରାଇ ଷ୍ଟେସନର ଅପୂର୍ବ ଶକ୍ତି ଥିଲା ପରି ମୋର ମନେ ହେଲା । ଷ୍ଟେସନରେ ପ୍ରାୟ ଦୁଇଘଣ୍ଟା ବିଶ୍ରାମରେ ମାନସିକ ଅବସାଦ କିଛି ଦୂର ହେବାରୁ ଶୁଣିଲି ମୋଗଲସରାଇ ଷ୍ଟେସନରୁ ବନାରସ ଦେଇ କୁମ୍ଭମେଳା ପର୍ଯ୍ୟନ୍ତ ବସ୍ ମଧ୍ୟ ଅନେକଗୁଡ଼ିଏ ଚାଲୁଛି । ତେଣୁ ସେଠାରୁ ବସ୍ ଯୋଗେ ଯିବାର ସ୍ଥିର କଲି ।

ବନାରସ୍‌ରୁ ଏଲାହାବାଦ ପ୍ରାୟ ଶହେ ମାଇଲ ରାସ୍ତା । ଏ ରାସ୍ତାରେ ଯିବା ଦ୍ୱାରା ଏ ଅଞ୍ଚଳର ଗ୍ରାମ୍ୟ ଜୀବନର ଚିତ୍ର ଦେଖିବାକୁ ମିଳିଲା । ବନାରସରୁ ଆରମ୍ଭ କରି ଏଲାହାବାଦ ପର୍ଯ୍ୟନ୍ତ ଯାତ୍ରୀମାନେ ପଦବ୍ରଜରେ, ସାଇକଲ୍‌ରେ, ସାଇକଲ ରିକ୍‌ସାରେ, ବଳଦ ଗାଡ଼ି ବା ଘୋଡ଼ା ଗାଡ଼ିରେ ଅନବରତ ଚାଲିଥାନ୍ତି । ଏ ଆଡ଼ର ଗୋଟିଏ ପ୍ରକାର ବଳଦଗାଡ଼ି ଦେଖିଲି ଠିକ୍ କୁଡ଼ିଆ ପରି ଉପରେ ପୂଲାଏ ଛାଦନ—ତାହା ତଳକୁ ଗୋଟିଏ ମଞ୍ଚା ପରି ଜାଗାରେ ଗୋଟିଏ କୁଟୁମ୍ବର ଲୋକେ ସ୍ୱଚ୍ଛନ୍ଦରେ ଶୋଇ ବା ବସି ପାରିବେ—ତା ତଳେ ଗୋଟିଏ ଥାକରେ ବାସନ, କୁଶନ, ହାଣ୍ଡି, କୁଣ୍ଡି ଆବଶ୍ୟ ଦୈନନ୍ଦିନ ଯାତ୍ରୀ ବ୍ୟବହାର୍ଯ୍ୟ ସାମଗ୍ରୀ—ବା ଶୋଇବା ଥାକକୁ ଉଠିବା ପାଇଁ ଗୋଟିଏ ନିଶୁଣି ଗାଡ଼ିରେ ଥାଏ । ଅବଶ୍ୟ ଏ ଆଡ଼ର ବଳଦମାନେ ଏ ପ୍ରକାର ଚଳମାନ କୁଟୀରକୁ ବୋହି ନେବାକୁ ସମର୍ଥ ।

ଯୁକ୍ତ ପ୍ରଦେଶରେ ଜାଳକାଠର ଅଭାବ । ରାସ୍ତା କଡ଼ରେ ମଧ୍ୟ ବିଶେଷ ଗଛପତ୍ର ନାହିଁ । ଗଛର ବହୁମୂଲ୍ୟତା ଜଣାଇ ଦେବା ପାଇଁ ରାସ୍ତା କଡ଼ରେ ଯେଉଁ ଗଛମାନ ଅଛି, ସେ ସବୁଥିରେ ନମ୍ବର ଦିଆଯାଇଛି । ପ୍ରତି ମାଇଲ ଆରମ୍ଭରେ ନୂଆ ନମ୍ବର ଆରମ୍ଭ । ବୋଧହୁଏ ମାଇଲକୁ ପ୍ରତି ପାଖରେ ହାରାହାରି ଶହେରୁ କିଛି କମ୍ ଗଛ । ରାସ୍ତା ପାଖରେ ଚଷ

ଷ୍ଟେଟ ଦୋକାନ ଅନେକ ଥିଲା । ପନି, ଝରିବା ଅଣ୍ଟା, ଡାଲ ଇତ୍ୟାଦି ସବୁ ରନ୍ଧନ ସାମଗ୍ରୀ ଦେଖିଲି କିନ୍ତୁ ସବୁଠି ଜାଳି କାଠ ବଦଳରେ ଘଷି । ଘଷି ହିଁ ଏ ଅଞ୍ଚଳରେ ରନ୍ଧା ବଢ଼ା ପାଇଁ ଏକମାତ୍ର ଜାଳ ବୋଲି ମନେହେଲା ।

ପ୍ରାୟ ଚାରି ଘଣ୍ଟାରେ ବନାରସରୁ ଏଲାହାବାଦ ପହଞ୍ଚିଲୁ । ଲୋକେ ସାଧାରଣତଃ ବସରେ ଅସୁବିଧା ଯୋଗୁ ଟ୍ରେନରେ ଯାତ୍ରା କରିବା ସୁବିଧା ବୋଲି ଭାବନ୍ତି । କିନ୍ତୁ ଏଠାରେ ଆମେ ବସ୍‌ରେ ଯେପରି ଭାବରେ ଗଲୁ, ତାହା ତୁଳନାରେ ବନାରସରୁ ଏଲାହାବାଦକୁ ଯାଉଥିବା ଟ୍ରେନମାନ (ଯେଉଁ ଟ୍ରେନ୍‌ର ଛାତ ଉପରେ ସୁଦ୍ଧା ହଜାର ହଜାର ଯାତ୍ରୀ ଥିଲେ) ଢେର ବେଶୀ ଅସୁବିଧାଜନକ ଓ ବିପଜ୍ଜନକ ମଧ୍ୟ ଥିଲା ।

କୁମ୍ଭ ମେଳାରେ ସମ୍ବଲପୁରର କେତେଜଣ ବିଶିଷ୍ଟ ବ୍ୟକ୍ତି କଳ୍ପବାସ ପାଇଁ ଝୁସି ଅଞ୍ଚଳରେ ଏକ ଆଶ୍ରମ ଖୋଲିଥିଲେ । ତାର ନାମଥିଲା 'ସମ୍ବଲପୁର କଲ୍ୟାଣ ଆଶ୍ରମ' । ମୁଁ ସେଇଠାରେ ରହିବାର ସ୍ଥିର କରିଥିଲି ପୂର୍ବରୁ, କିନ୍ତୁ ମୋତେ ସେ ଜାଗା ଖୋଜିବାକୁ ପ୍ରାୟ ତିନିଘଣ୍ଟା ସମୟ ଲାଗିଲା ।

ସେ ଦିନ ରାତ୍ରିରେ ଆଶ୍ରମର ଗୋଟିଏ ବନ୍ଧୁ ପରିବାରଙ୍କ ତମ୍ବୁରେ ବିଶ୍ରାମ ନେଇ, ତହିଁ ଆର ଦିନ (୩ ଫେବୃଆରୀ ୧୯୫୪) ପ୍ରତ୍ୟୁଷ ପୂର୍ବରୁ ପ୍ରାୟ ସାଢ଼େ ତିନିଟା ସମୟରୁ ତ୍ରିବେଣୀ—ସଙ୍ଗମରେ ବୁଡ଼ ପକାଇବା ପାଇଁ ବାହାରିଲୁ । ଆମ ଦଳରେ ଆମେ ଥାଉଁ ପ୍ରାୟ ତିରିଶ ଜଣ । ଅଧେରୁ ଅଧିକ ସ୍ତ୍ରୀ ଲୋକ । ସଙ୍ଗମକୁ ଯିବାକୁ ଗଙ୍ଗାନଦୀ ପାରି ହେବାକୁ ହେବ । ଷ୍ଟିମର ଘାଟରେ ଲୋକାରଣ୍ୟ । ତେଣୁ ସେଠାରେ ଡଙ୍ଗା ଆଦି ପାଇବାର ଆଶା ପରିତ୍ୟାଗ କରି ସାମୟିକ ସାମରିକ ପୋଲ ଦେଇ ଗଙ୍ଗାନଦୀ ପାରି ହେଲୁ । ସକାଳ ପ୍ରାୟ ଛଅଟା ସମୟରୁ ନାଗା ସନ୍ନ୍ୟାସୀମାନେ ଦଳ ଦଳ ହୋଇ ଶୋଭାଯାତ୍ରା କରି ଆସିବେ । ପ୍ରୟାଗରେ କୁମ୍ଭ ଆଡ଼େ ପ୍ରଥମେ ବୁଡ଼ ପକାଇବାର ଅଧିକାରୀ । ସେମାନଙ୍କର ଶୋଭାଯାତ୍ରା ଦେଖିବା ପାଇଁ ଲୋକାରଣ୍ୟ । ନାଗାମାନଙ୍କର ହାତୀ, ଘୋଡ଼ା, ମୋଟର ଧ୍ୱଜା, ଛତ୍ର ଆଦି ଦେଖି ମନେ ହେଲା ଜଣେ ମହାରାଜାଧିରାଜ ଯାଉଛନ୍ତି ସଦଳବଳେ । ଦଳ ଦଳ ହୋଇ ଉଲଗ୍ନ ସାଧୁ ସବୁ ବାହାରୁଥାନ୍ତି । ଖୁବ୍

କମ୍ ଲୋକଙ୍କର ମୁଖରେ ସନ୍ନ୍ୟାସର ଦୀପ୍ତି । ଦେଖିଲେ ଭକ୍ତି ଉଦ୍ରେକ ହେବା କଠିନ । ବିଦେଶୀ ଲୋକେ ସୁବିଧା ପାଇଥିଲେ ଏମାନଙ୍କର ଫଟୋ ଉଠାଇ ପ୍ରଚାର କରିଥାନ୍ତେ—ଭାରତ କେତେ ଅସଭ୍ୟ ଦେଶ, କିନ୍ତୁ ଏଇ ନାଗା ସାଧୁମାନଙ୍କର ଫଟୋ ଉଠାଇବା ନିଷେଧ କରାଯାଇ ଥିଲା । ନାଗାମାନଙ୍କ ମଧ୍ୟରେ ମହାପୁରୁଷ ହୁଏ ତ ଥାଇ ପାରନ୍ତି କିନ୍ତୁ ଏମାନଙ୍କର ମଧ୍ୟରୁ କେତେକଙ୍କର ଔଦ୍ଧତ୍ୟ ଓ ବିଭିନ୍ନ ସଂପ୍ରଦାୟର ପରସ୍ପର ପ୍ରତି ଦ୍ୱେଷ ଜଣା ପଡ଼ି ଯାଉଥିଲା । କବି ରାଧାନାଥଙ୍କ ‘ଦରବାର’ରେ ଯେପରି ‘ଆସନ କଜିଆ’ର ଚିତ୍ର ଦିଆଯାଇଛି, ଏମାନଙ୍କ ମଧ୍ୟରେ ସେହିପରି ‘କିଏ ଆଗ ବୁଡ଼ ପକାଇବ’, ଏହି ବିଷୟ ନେଇ ତୀବ୍ର ପ୍ରତିଦ୍ୱନ୍ଦ୍ୱିତା ଅଛି । ଯାହା ହେଉ ଏମାନଙ୍କର ବୁଡ଼ ପରେ ସେହି ପାଣିରେ ବୁଡ଼ ପକାଇଲେ କୁଆଡ଼େ ବିଶେଷ ପୁଣ୍ୟ ହୁଏ । ଆମ୍ଭେମାନେ ଯେତେବେଳେ ଏମାନଙ୍କର ଶୋଭାଯାତ୍ରା ଦେଖି ସାରି ଗଙ୍ଗାକୂଳରେ ଗାଧୋଇବା ସ୍ଥାନରେ ପହଞ୍ଚିଲୁ, ସେଠାରେ ଅନୁଭବ କଲୁ ବହୁତ କାଦୁଅ । ସେଠି ପଡ଼ି ନ ଯାଇ ଠିକ୍ ଭାବରେ ଚାଲିବା ସର୍କସ୍‌ର ତାର ଉପରେ ଚାଲିବା ଭଳି କଷ୍ଟକର ଥିଲା । ସ୍ୱର୍ଗକୁ ଯିବାକୁ ହେଲେ ପାପ ପଙ୍କରେ ଯିବାକୁ ହୁଏ ବୋଲି ସେ ଆଡ଼େ ଯିବାବେଳେ ମନେ ହେଉଥିଲା । ସେ ଦିନ ପରେ ଯେଉଁ ଭୀଷଣ ଦୁର୍ଘଟଣା ହୋଇ ବହୁଲୋକ ପ୍ରାଣ ହରାଇଲେ, ତାର ଅନ୍ୟତମ କାରଣ ହେଉଛି, ଏହି ପିଚ୍ଛିଳ ପଥ । ଯେଉଁମାନେ ସେଠାରେ ଥରେ ଗୋଡ଼ ଖସାଇଛନ୍ତି, ଭିଡ଼ ଭିତରେ ଆଉ ଉଠି ନ ପାରି ମାଡ଼ି ହୋଇ ମରିଛନ୍ତି । ଆମ ମଧ୍ୟରୁ ଜଣେ ବୁଢ଼ା ମହିଳା ମଧ୍ୟ ଆମେ ଯାଉଥିବାବେଳେ ପଡ଼ିଗଲେ । ଭାଗ୍ୟବଶତଃ ସେ ସମୟରେ ବିଶେଷ ଭିଡ଼ ନ ଥିଲା । ମୁଁ ତାଙ୍କୁ ସେଠାରୁ ଉଠିବାରେ ସାହାଯ୍ୟ କରିଥିଲି ।

ବୁଡ଼ ସ୍ଥାନରୁ କୂଳ କମ୍ ନିମ୍ନ ହୋଇଥିବାରୁ ବୁଡ଼ ସ୍ଥାନରୁ ସମବେତ ଜନତାର ବିଶାଳତାର ଏକ ସୁନ୍ଦର ଦୃଶ୍ୟ ଦେଖିଥିଲୁ । ଚାରିଆଡ଼େ ମନୁଷ୍ୟ ମୁଣ୍ଡର ସମୁଦ୍ର ଅନ୍ତତଃ କୋଡ଼ିଏ ଲକ୍ଷ ହେବେ ବୋଲି ଅନୁମାନ । ବୁଡ଼ ସ୍ଥାନରେ ଗୋଆଳମାନେ ପିତୃପୁରୁଷ-ମାନଙ୍କୁ ଦେବା ଉଦ୍ଦେଶ୍ୟରେ ଦୁଧ ବିକ୍ରୀ କରୁଥାନ୍ତି । ଦୁଧ ଅବଶ୍ୟ ଗଙ୍ଗାଜଳ ପରିଶ୍ରିତ । ଏହା ସ୍ନାନ ପରେ ସଙ୍ଗମରେ ଢାଳିଲେ ପିତୃପୁରୁଷ

ତୃପ୍ତ ହୁଅନ୍ତି କିନ୍ତୁ ଆଜି କାଲି ଯେପରି ଆବାଳବୃଦ୍ଧ ବନିତା ଦୁଗ୍ଧବର୍ଜନ କରି ପାନୀୟରୂପେ ଚା ବ୍ୟବହାର କରୁଛନ୍ତି, ଭବିଷ୍ୟତରେ କୁମ୍ଭମେଳାରେ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଦୁଧ ବଦଳରେ ଚା ଢ଼ାଳିବାକୁ ହେବ । ଏଠାରେ ଗୋଦାନ ଶସ୍ତା । ଟଙ୍କାଏ ଚାରିଅଣା ଦକେ ଖର୍ଚ୍ଚ କଲେ ଗଙ୍ଗାରେ ଗୋଦାନର ଫଳ ମିଳେ । ଗୋଟିଏ ବସ୍ତୁ କେତେ ଲୋକଙ୍କର ପିତୃପୁରୁଷଙ୍କୁ ଉଦ୍ଧାର କରିଛନ୍ତି, ତାର ଠିକଣା ନାହିଁ ।

କୁମ୍ଭ ବୁଡ଼ରେ ଫେରିଲାବେଳେ ସେହି କାଦୁଅ ମଧ୍ୟ ଦେଇ ଫେରିବାକୁ ହେଲା । କିନ୍ତୁ ଲୋକ ସଂଖ୍ୟା ଖୁବ୍ ବଢ଼ିଯାଇ ଥିବାରୁ ଆହୁରି ଅଧିକ ସାବଧାନ ହେବାକୁ ପଡ଼ିଲା । ସେ ସମୟରେ ପୋଲିସ କର୍ତ୍ତୃପକ୍ଷ ସାଧୁମାନଙ୍କର ହାତୀ, ଘୋଡ଼ା, ଓଟ, ମୋଟରର ରାସ୍ତା ଠିକ୍ କରିବାରେ ଏତେ ଦୂର ବ୍ୟସ୍ତ ଥାନ୍ତି ଯେ ଆଉ ଆମଭଳି ଲକ୍ଷ ଲକ୍ଷ ଯାତ୍ରୀଙ୍କ ରାସ୍ତା ଠିକ୍ କରିବାକୁ ଦୃଷ୍ଟି ଦେଇ ପାରିଲେ ନାହିଁ, ଆମେ ଏପରି ଅବସ୍ଥାରେ ପଡ଼ିଗଲୁ ଯେ ଚାରିଆଡୁ ଭିଡ଼ ବଢ଼ି ଯାଉଥାଏ । ପୂର୍ବ ପଶ୍ଚିମ ଉତ୍ତର ଓ ଦକ୍ଷିଣ, ଚାରିଆଡ଼େ ନାଗା ସନ୍ୟାସୀମାନଙ୍କର ଶୋଭାଯାତ୍ରା । ଗୋଟିଏ ଗୋଟିଏ ହାତୀ ଏତେ ସୁସଜ୍ଜିତ ହୋଇଥାନ୍ତି ଯେ, ଯେ କୌଣସି ରାଜା ମହାରାଜାଙ୍କ ବିବାହ ଆଦି ଉତ୍ସବରେ ମଧ୍ୟ ଏତେ ଆଡ଼ମ୍ବର ହୋଇ ପାରିବ ନାହିଁ । ଭିଡ଼ ବେଶୀ ହେବାରୁ ଆମ ଦଳର ମହିଳାମାନଙ୍କୁ ମଝିରେ ରଖି ପୁରୁଷମାନେ ଚାରିଆଡ଼େ ଘେରି ଦେଇ ପରସ୍ପର ହାତ ଛନ୍ଦା ଛନ୍ଦି ହୋଇ ଛିଡ଼ା ହେଲୁ । ଚାରିଆଡୁ ଜନତାର ଚାପ ଏତେ ବଢ଼ିଲା ଯେ ମଝିରେ କେତେଜଣ ମହିଳା ଅଚେତନ ପ୍ରାୟ ହୋଇଗଲେ । ମୁଁ ପଛରେ ଥାଏ ଉଭୟ ଆଡ଼େ ଜଣ ଜଣଙ୍କର ହାତ ଧରି । ହଠାତ୍ ଜଣେ ଅଶ୍ୱାରୋହୀ ପୋଲିସର ଘୋଡ଼ାର ଖୁରରେ ମୁଁ ସାମାନ୍ୟ କିଛି ଆଘାତ ପାଇ ଠେଲି ହୋଇଗଲି । ଏ ପ୍ରକାର ଅବସ୍ଥାରେ ଆମେ ଚାରି ଘଣ୍ଟାରେ ମୋଟେ ପ୍ରାୟ ଶହେ ଗଜ ଅଗ୍ରସର ହୋଇ ପାରିଲୁ । ଶେଷରେ ଯେତେବେଳେ ଗଙ୍ଗା ପୋଲ ମୁହଁରେ ପହଞ୍ଚିଗଲୁ, ସେ ସମୟରେ ମହା-ବିପଦରୁ ଉଦ୍ଧାର ପାଇଲୁ, ଆମ ଦଳ ଅତି ସତର୍କ ହୋଇ ନଥିଲେ ସେ ଦିନ ଆମ ମଧ୍ୟରୁ କେତେ ଜଣଙ୍କର ପ୍ରାଣ ହୁଏତ ଯାଇଥାନ୍ତା । କୁମ୍ଭ ମେଳାରେ ଯଦି ମୁଁ ପୁଣ୍ୟ ସଞ୍ଚୟ କରିଥାଏ, ତେବେ ତାହା ଆମଦଳରେ ଥିବା ଦୁର୍ବଳ ମହିଳାମାନଙ୍କୁ ଗୁରୁତର ବିପଦରୁ ରକ୍ଷା କରିବାରେ ।


Digitized by srujanika@gmail.com

ରାତ ଡନଟାରୁ ଆଶ୍ରମରୁ ବାହାର ପୁଣି ଆଶ୍ରମକୁ ଫେରି ଆସିବାକୁ ଦିନ ଦୁଇଟା ବାଜିଗଲା । ପ୍ରାୟ-ସନ୍ଧ୍ୟା ପାଞ୍ଚଟାବେଳକୁ ଆମେ ଶୁଣିଲୁ ବହୁ ସଂଖ୍ୟକ ଲୋକ ଏଥିରେ ଚକଟି ହୋଇ ମରିଛନ୍ତି । ମୁଁ ବିଶ୍ୱାସ କରି ପାରିଲି ନାହିଁ । ତହିଁ ଆରଦିନ ଏଲାହାବାଦ ନଗରୀରେ ଖବର କାଗଜରୁ ଦୁର୍ଘଟଣାର ସମ୍ବାଦ ବ୍ୟାପିଗଲା—ଟେଲିଗ୍ରାଫ୍ ଅଫିସକୁ ଗଲି ସମ୍ବଲପୁରକୁ ଖବର ପଠାଇବାକୁ—କୁମ୍ଭମେଳାରେ କେହି ଦୁର୍ଘଟଣାରେ ପଡ଼ି ନାହାନ୍ତି ବୋଲି, ମାତ୍ର ସେଠି ମଧ୍ୟ ଲୋକାରଣ୍ୟ । ଶହ ଶହ ଲୋକେ ବନ୍ଧୁ ବାନ୍ଧବଙ୍କ ନିକଟକୁ ଖବର ପଠାଇବାକୁ ବ୍ୟସ୍ତ ହୋଇଥାନ୍ତି । ସେଠାରୁ ଫେରି ଆସି ତହିଁ ଆରଦିନ ଗୋଟିଏ ଗ୍ରେଟ ଅଫିସରୁ ତାର ଖବର ପଠାଇଲି । ସେ ଖବର ପାଇ ସମ୍ବଲପୁର ସହରର ବହୁ କୁଟୁମ୍ବର ଉଦ୍‌ବେଗ ଶାନ୍ତ ହୋଇଥିଲା ବୋଲି ପରେ ଖବର ପାଇଲି ।

ସମୁଦ୍ର ପାଣି ଲୁଣିଆ । କିନ୍ତୁ ତା ମଧ୍ୟରେ ଅନେକ ବହୁମୂଲ୍ୟ ରତ୍ନ ଅଛି । କିନ୍ତୁ ସେହି ରତ୍ନ ପାଇବାକୁ ହେଲେ ପରିଶ୍ରମ କରିବାକୁ ପଡ଼ିବ । ବୁଡ଼ିବାକୁ ହେବ । ମୁଁ କୁମ୍ଭମେଳାକୁ ଗଲି, କିନ୍ତୁ ରତ୍ନ ପାଇବାର ଅର୍ଥାତ୍ ବିଶିଷ୍ଟ ମହାପୁରୁଷମାନଙ୍କୁ ସନ୍ଧାନ କରିବାର, ସେମାନଙ୍କର ଧର୍ମୋପଦେଶ ଶୁଣିବା ବା ଶଙ୍କରାଚାର୍ଯ୍ୟଙ୍କ ପ୍ରବଚନ କ୍ଷଣମିହ ସଜ୍ଜନ ସଙ୍ଗତ ରେକା, ଭବତ ଭବାର୍ଣ୍ଣବ ତରଣେ ନୌକା, ସାର୍ଥକ କରିବାର ସୁଯୋଗ ପାଇନାହିଁ । ତେଣୁ ମୁଁ କେବଳ ସମୁଦ୍ରରେ ଭାସିଲା ପରି ଭାସିଛି । ପୁଣ୍ୟ ସଞ୍ଚୟ ବୋଧହୁଏ କରିନାହିଁ । କିନ୍ତୁ ଏତେ ଲକ୍ଷ ଲୋକଙ୍କର ଭିତରେ ଭାରତମାତାଙ୍କର ପ୍ରକୃତ ଦର୍ଶନ ମୁଁ ପାଇଛି । ଏ ଦେଶ ସବୁଦିନ ଧର୍ମ ପାଇଁ ପାଗଳ ଥିଲା ଓ ରହିବ । ଏଥିରେ ଦୁଃଖିତ ହେବାର କିଛି ନାହିଁ । ବର୍ତ୍ତମାନ ଯୁଗରେ ସଭ୍ୟତାରେ ଏ ମେଳାରେ ଗର୍ବିତ ହେବାକୁ ଶିଖିବାକୁ ହେବ ଆମକୁ । ଏହାହିଁ ମୋର କୁମ୍ଭମେଳା ଦର୍ଶନର ଧାରଣା ।



ମୁଦ୍ରାକର—ଗୋବିନ୍ଦ ସାହୁ, ବାସନ୍ତୀ ପ୍ରିଣ୍ଟର୍ସ, ମେରିଆବଜାର କଟକ-୧